# ହାସ୍ୟରେ ରସଗୋଲା

ଲେଖକ :

ଶ୍ରୀ ବିପିନ ବିହାରୀ ଶତପଥୀ

ଶିକ୍ଷକ

କବିସୂର୍ଯ୍ୟନଗର, ଗଞ୍ଜାମ

ସତ୍ୟ ପ୍ରକାଶ

ବ୍ରହ୍ମପୁର-ଗଞ୍ଜାମ

ମୂଲ୍ୟ—ପାଞ୍ଚଟଙ୍କା

ଏ ବର୍ଷର ଗପ ଗୁଡ଼ିକ : ପୃଷ୍ଠା



---

ହାତ୍ୟରେ ରସଗୋଲା


ଲେଖକ—ଶ୍ରୀ ବିପିନ ବିହାରୀ ଶତପଥି

ପ୍ରକାଶିକା—ଶ୍ରୀମତୀ ସତ୍ୟଭାମା ପାତ୍ର
ସତ୍ୟ ପ୍ରକାଶ
ବ୍ରହ୍ମପୁର—ଗଞ୍ଜାମ

ପ୍ରକାଶକାଳ : ୧୦-୧୧-୯୦ ପ୍ରଥମାଷ୍ଟମୀ

ମୁଦ୍ରଣ : ତ୍ରିମୂର୍ତ୍ତି ପ୍ରିଣ୍ଟର୍ସ
ବ୍ରହ୍ମପୁର-୧

ମୂଲ୍ୟ : ପାଞ୍ଚଟଙ୍କା

# ସ୍ୱପ୍ନରେ ରସଗୋଲା



ରାତି ପାହି ଦିନ ଘଡ଼ିଏ ହେଲାଣି । ଘରର ସମସ୍ତେ ନିଜ ନିଜ କାମରେ ଗଲେଣି । କେବଳ ଆମ ଝୁଲିର ନିଦ ଏଯାଏଁ ଭାଙ୍ଗି ନାହିଁ । ଏତିକିବେଳେ କିଏ ତାକୁ ଡାକିଦେଲା—"ହେ ଝୁଲି, ଉଠ୍ ।"

ଝୁଲିର ନିଦଟା ଚହଉଁକିନା ଭାଙ୍ଗିଗଲା । ସେ ସେମିତି ଶୋଇରହି ରେକେଇ ଉଠିଲା ବିରକ୍ତିରେ କହିଲା—'କିଏରେ ତୁ ? ସକାଳୁ ସକାଳୁ ଆସି ଏତେ ସୁନ୍ଦର ନିଦଟାକୁ ଭାଙ୍ଗି ଦେଲୁ ? ଯାଉଛୁନା ଦେଖିବୁ ?

ପୁଣି ଶୁଣାଗଲା—"ରାଗିଲୁ କି ଭଉଣୀ ? ଦେଖ, ମୁଁ କିଏ ଆସିଛି । ମୁଁ ପରା ତୋର ଅତି ଆଦରର ସାଙ୍ଗ ।"

ଝୁଲି କହିଲା—ତୁ କ'ଣ ମୋ ନିଦଠାରୁ ବଳି ଆଦରର ? ପୁଣି ଶୁଭିଲା—"ହଁ ଆଖି ଖୋଲି ଦେଖ, ଜାଣିବୁ ମୋ କଥା ସତ କି ମିଛ ।" ଝୁଲି ସେମିତି ଶୋଇ ରହି

ବଉକ୍ତିରେ କହିଲା—"ଓଃ, ତୁ କିଏ, ନାଁଟା କହୁନୁ ?
ଉତ୍ତର ମିଳିଲା—ମୁଁ ପରା ତୋ ପ୍ରିୟ ରସଗୋଲା ।

ନାଁଟା ଯେମିତ ଶୁଣିଛି, ଝୁଲି ସଙ୍ଗେ ସଙ୍ଗେ ରେଜେଇ ତଳୁ ଚଟ୍‌କିନା ମୁହଁ ବାହାର କରି ଦେଖିଲା । ସତକୁ ସତ ଟେବୁଲ୍ ଉପରେ ସୁନ୍ଦର ଏକ ପ୍ଲେଟରେ ଧଳା ଫିନ୍ ଫିନ୍ ରସଗୋଲାଟିଏ ।

ଝୁଲି କହିଲା—"ବାଃ ବାଃରେ ସାଙ୍ଗ ! ତୁ କେତେ ବଢ଼ିଆ । କିନ୍ତୁ ଆଜି ତୁ ଏତେ ଚଞ୍ଚଳ ଆସିଲୁ କାହିଁକି ? ତତେ କ'ଣ ଜଣାନାହିଁ ଯେ ଦିନ ଆଠଟା ନ ହେଲେ ମୁଁ ବିଛଣାରୁ ଉଠେ ନାହିଁ ।"

ରସଗୋଲା କହିଲା—"କ୍ଷମା କର ଲୋ ଭଉଣୀ । ମୋର ଜମା ଦୋଷ ନାହିଁ । ତୋର ବାପା ସକାଳୁ ମତେ ବଜାରରୁ ଧରି ଆଣି ଏଇଠି ରଖିଦେଇ ଗଲେ । ସାଙ୍ଗ ସାଥୀଙ୍କୁ ଛାଡ଼ି ଏକୁଟିଆ ଏଠି କେମିତି ରହିବି ? ଉଠ୍, ମତେ ଟିକିଏ ଆଦର କର ।"

ଝୁଲି ଏବେ କ'ଣ କରିବ ? ଇଆଡ଼େ ବଢ଼ିଆ ନିଦକୁ ସିଆଡ଼େ ବଢ଼ିଆ ରସଗୋଲା । କେଉଁଟା ଆଗ ?

ରସଗୋଲା କହିଲା—"ଦେଖ ଭଉଣୀ ! ମାଛି, ଜନ୍ତା, ପିମ୍ପୁଡ଼ି ମୋତେ ଘେରିଯିବେ । ଅସ୍ତ ବ୍ୟସ୍ତ କରି ପକାଇବେ । ମୋ ଅବସ୍ଥା ଢ଼ିଲା । ତୁ ଚଞ୍ଚଳ ମୋତେ ସାହାଯ୍ୟ କର ।

ଝୁଲି ସେମିତି ଶେଯରେ ଶୋଇ ରହି କହିଲା—"ହେ ମୋର ପ୍ରିୟ ରସଗୋଲା ! ମୁଁ ତମର ଦୁଃଖ ଅନୁଭବ

କରୁଛି । ତେବେ ବର୍ତ୍ତମାନ ପାଇଁ ତମେ ମୋର ପଢ଼ା ଘର ଆଲମିରା ଭିତରେ ନିଶ୍ଚିନ୍ତରେ ବିଶ୍ରାମ ନିଅ । ଆଠଟା ପରେ ମୁଁ ତୁମକୁ ଭେଟିବି ।"

ହଠାତ୍ ରସଗୋଲା ଚିତ୍କାର କରି ଉଠିଲା—"ଭଉଣୀ, ଶୀଘ୍ର ଉଠ । ମୋତେ ରକ୍ଷାକର । ତମ ପୋଷା କୁକୁର ଟିମା ମୋ ଆଡ଼କୁ ଧାଇଁ ଆସୁଛି ।

ସଙ୍ଗେ ସଙ୍ଗେ ଝୁଲି ଧଡ଼ପଡ଼ ହୋଇ ଉଠି ପଡ଼ିଲା । ଟିମା ତ୍ରରେ ଚାଲିଗଲା ।

ବର୍ତ୍ତମାନ ଝୁଲିର ତୀକ୍ଷଣ ଦୃଷ୍ଟି ରସଗୋଲା ଉପରେ ପଡ଼ିଲା । ରସଗୋଲାକୁ ଦେଖି ତା, ମନଟା ଖାଲି ଟକ୍ ଟକ୍ ହେଲା । ଦାନ୍ତ ପାଟି ସବୁ ଫକ୍ ଫକ୍ ନାଚିଲେ । ବାଧା ନ ମାନି ଲାଳ ସବୁ ବହି ଆସିଲା । ଝୁଲି ଅସମ୍ଭାଳ ହୋଇ 'ହେ ମୋର ପ୍ରିୟ ରସଗୋଲା' କହି ଯେମିତି ପାଟିକୁ ନେବାକୁ ବସିଛି ରସଗୋଲା ଫଟ୍‌କିନା ପ୍ଲେଟକୁ ଖସି ପଡି କହିଲା— ଇସ୍ !

"ତମ ମୁହଁ କି ଅସନା ମ ! ମୋତେ ସହ୍ୟ ହେଉ ନାହିଁ । ଯାଅ ଭଉଣୀ, ଦୟା କରି ମୁହଁଟାକୁ ଟିକିଏ ଭଲଭାବେ ଧୋଇ ସଫା କରି ଚାଲି ଆସ ।"

ଝୁଲି ଦୌଡ଼ିଗଲା । ଥଣ୍ଡା ପାଣିରେ ମୁହଁ ଧୋଇ ସଫା କରି ପୋଛି ପାଛି ହୋଇ ଆସିଲା । ତା ପରେ ରସଗୋଲାକୁ ଅତି ଆଦରରେ ଚୁମା ଦେଲାବେଳେ ରସଗୋଲା ଘୃଣାରେ ନାକ ଟେକି ପୁଣି ପ୍ଲେଟକୁ ଡେ଼ଇଁ ପଡ଼ି କହିଲା— "ଛି, ଛି, କି ଦୁର୍ଗନ୍ଧ ତମର ପାଟି !" ମଇଳା ଜମି ଧଳା ଦାନ୍ତଗୁଡ଼ାକ ହଳଦିଆ ଦେଖା ଯାଉଛି । ତୁମର କ'ଣ ଦାନ୍ତ ରୋଗ ହୁଏ ନାହିଁ ?

ଝୁଲ ଥଙ୍ଗ ଥଙ୍ଗ ହୋଇ କହିଲା—ହଁ, ହୁଏ । ମୋର କେତୋଟା ଦାନ୍ତ ପୋକଡ଼ା ହୋଇ ଯାଇଛି । ସମୟେ ସମୟେ ଦାନ୍ତମୂଳ ଫୁଲି ଦରଜ ହୁଏ ।

ରସଗୋଲା କହିଲା—ଜାଣି ପାରୁଛି, ତମେ ପ୍ରତିଦିନ ସକାଳୁ ଦାନ୍ତ ଘଷି ସଫା କରୁନାହଁ । ତେଣୁ ଏମିତି ଦାନ୍ତ ରୋଗ ହେଉଛି । ଏଭଳି ଦାନ୍ତରେ ପୁଣି ମୋତେ କାମୁଡ଼ି ଧରିବ ।

ଝୁଲ କହିଲା—ତା' ହେଲେ ତମେ କ'ଣ ଚାହୁଁଛ ?

ରସଗୋଲା କହିଲା—ନା ଭଉଣୀ । ତମେ ଯାଅ । ଭଲକରି ଦାନ୍ତକୁ ମାଜି ସଫାକରି ଆସ । ତାପରେ "ତମର ଆମର ସାଙ୍ଗ, ନଡ଼ିଆ ପୁଞ୍ଜାଏ ଙ୍ଗ ।"

ଝୁଲ ଦୌଡ଼ିଗଲା । ଦାନ୍ତ ଜିଭ ଖୁବ୍ ସଫା କରି ଫେରି ଆସି ରସଗୋଲାକୁ କହିଲା—ଦେଖିଲ ମୋ ଦାନ୍ତକୁ ।

ରସଗୋଲା କହିଲା—ବାଃ ! ତମ ଦାନ୍ତ ଆଜି କେତେ ଉଜ୍ଜ୍ୱଳ ଦେଖାଯାଉଛି ।

ତା'ପରେ ଝୁଲ ଖୁସି ମନରେ ରସଗୋଲାକୁ ଧରି ପାଟିରେ ପୂରାଇବାକୁ ଗଲାବେଳେ ପୁଣି ରସଗୋଲା ପ୍ଲେଟକୁ ଡେଇଁ ପଡ଼ି କହିଲା—ଝିଅଟି ତୋରିକ ! ଆହୁରି କେମିତିକା ଏକ ପଚା ଗନ୍ଧ ତମ ପେଟ ଭିତରୁ ଆସୁଛି । ତମ ପେଟ ଭିତରେ ଗୁଡ଼ାଏ ପଚା ସଢ଼ା ମଇଳା ଧରି ବସିଛ ନା ଭଉଣୀ ।

ଝୁଲ କହିଲା—କିନ୍ତୁ ସେଥିରେ ତମର କ୍ଷତି କ'ଣ ? ମୋ ଦାନ୍ତ ପାଟି ଯେ ବେଶ୍ ସଫାସୁତରା ହୋଇ ତୁମକୁ ଝୁରୁଛନ୍ତି ।

ରସଗୋଲା କହିଲା—ସତ ଯେ ଭଉଣୀ, ତମେ କହିଲ, ମୁଁ କେମିତି ତମର ସେ ପେଟ ଭିତରକୁ ଯିବି ? ଅସହ୍ୟ ଦୁର୍ଗନ୍ଧରେ ଆଉଟ୍ ପାଉଟ୍ ହୋଇ ପୁଣି ପଦାକୁ ଚାଲି ଆସିବା ସାର ହେବ ସିନା, ମୁଁ ତ ଜମା ରହିପାରିବି ନାହିଁ ।

ଝୁଲି କହିଲା—ତେବେ ମୁଁ କ'ଣ କଲେ ତମେ ଖୁସି ହେବ ?

ରସଗୋଲା କହିଲା – ମାତ୍ର କେଇ ମିନିଟର କାମ ।

"ସକାଳ ସଞ୍ଜରେ ଯେ ଯାଏ ଝାଡ଼ା
ନହୁଏ ତାହାକୁ ବଇଦ ଲୋଡ଼ା ।"

ରସଗୋଲା କଥା ମାନି ଝୁଲି ପାଇଖାନାକୁ ଗଲା ।
ତାପରେ ଆସି କହିଲା—

"ଆସ ଆସ ସାଙ୍ଗ ହେ ରସଗୋଲା
ପାଟି ମେଲା ମୋର ପେଟଟି ଖୋଲା ।"

ରସଗୋଲା କହିଲା – ଟିକିଏ ରହ ।

ଝୁଲି କହିଲା—କାହିଁକି ? କ'ଣ ମଜା ଲାଗିଛି ? ମୁଁ ଆଉ ଜମା ରହି ପାରିବି ନାହିଁ ।

ରସଗୋଲା କହିଲା – ମୁଁ କ'ଣ ମନା କରୁଛି ? ହେଲେ ତୁମ ହାତରେ ଗୋଡ଼ରେ କେତେ କେତେ ରୋଗ ଜୀବାଣୁ ସବୁ ଲାଗି ରହିଥିବେ । ଏମିତି ଅବସ୍ଥାରେ ମୋତେ ପେଟକୁ ନେଲାବେଳେ ମୋ ସହିତ ରୋଗ ଜୀବାଣୁ ଯେ ନଯିବେ, କିଏ କହିବ ? ତମ ଦେହରେ ସାବୁନ ମାରି ଗାଧୋଇ ପଡ଼ । ସଫା ଲୁଗା ପିନ୍ଧ । ଯାଅ, ମୋ ସୁନା ଭଉଣୀଟା ପରି ! ଆଖି ଛୁଇଁ କହୁଛି, ସ୍ୱା' ପରେ ମୁଁ ଜମା ମନା କରିବି ନାହିଁ ।

ଝୁଲି ଦୌଡ଼ିଗଲା । ଗାଧୋଇ ପାଧୋଇ ସଫା ଲୁଗା ପିନ୍ଧି ମୁଣ୍ଡ ବାଳକୁ ସଜେଇ ସୁନାପିଲା ପରି ଆସି ଚୌକିରେ

ବସି ପଡ଼ିଲା । ତା’ପରେ ରସଗୋଲାକୁ ହାତରେ ଧରି କହିଲା— ଯାଅ ଯାଙ୍ଗ, ସିଧା ସଳଖ ମୋ ପେଟ କୋଠରୀକୁ ଚାଲିଯାଅ ।

ରସଗୋଲା କହିଲା - ତମେ ଯଦି ଆଜି ପରିକା ଠିକ୍ ସମୟରେ ଉଠି ସଫା ସୁତୁରା ହୋଇ ସୁନାପିଲା ପାଲଟି ଯିବ, ତେବେ ମୁଁ ରୋଜ ରୋଜ ଆସିବ ।

ଝୁଲି କହିଲା—ହଁ, ମୁଁ ଏଣିକି ସୁନାପିଲା ହେବ । ତମ କଥା ମାନି କାମ କରିବ ।

ତାପରେ ଝୁଲି ବଡ଼ ଆଦରରେ ରସଗୋଲାକୁ ଜାବୁଡ଼ି ଧରି କହିଲା—

“ହାୟ ହାୟରେ ରସଗୋଲା
ମନ ତମଠେଇଁ ଲାଖିଗଲା ।”

ଏତିକି ବେଳେ ଝୁଲି ବୋଉ ପାଟି କରି ଉଠିଲେ— “ଶେଯରେ ଶୋଇ “ରସଗୋଲା - ରସଗୋଲା” ବାଲିବାଲେଉଛୁ କାହିଁକି, ଝୁଲି ? ଜଲଦି ଉଠ୍ । ବାପା ତୋ ପାଇଁ ବଜାରରୁ ରସଗୋଲା ଆଣି ରଖିଯାଇଛନ୍ତି ଖାଇବୁ ।”

ବୋଉର ପାଟି ଶୁଣି ଝୁଲିର ନିଦଟା ଚାଉଁକିନା ଭାଙ୍ଗିଗଲା । ସେ ଧଡ଼ପଡ଼ ହୋଇ ଉଠିପଡ଼ି କହିଲା—ବୋଉ ! ତୁ ଟିକିଏ ଅପେକ୍ଷା କର । ମୁଁ ଆଗେ ଦାନ୍ତ ଘଷି, ଗାଧୋଇ ସଫା ସୁତୁରା ହୋଇ ଆସେ । ତାପରେ ରସଗୋଲା ଖାଇବି । ମୁଁ ଏଣିକି ସୁନାପିଲା ହୋଇଯିବ । ନଚେତ୍ ରସଗୋଲା ପରା ରାଗିବ ।



# ଫୁଲ ଓ ମହୁମାଛି



ସକାଳର ସୁନେଲି କିରଣ ଚାରିଆଡେ ବିଛେଇ ହୋଇ ପଡ଼ିଛି । ବଗିଚାରେ କେତେ ଜାତିର ରଙ୍ଗ ବେରଙ୍ଗ ଫୁଲ ସୁଲୁ ସୁଲିଆ ପବନରେ ହସି ହସି ଦୋହଲୁ ଥା'ନ୍ତି । ଏତିକି ବେଳେ ରାଣୀ ମହୁମାଛିଟିଏ ଉଡ଼ି ଉଡ଼ି ଆସି ସେଠାରେ ପହଞ୍ଚିଲା । ପବନରେ ପହଁରି ପହଁରି ମନ ଖୁସିରେ ଗୀତ ଗାଇବାକୁ ଲାଗିଲା—

ଏ ମୋହର ସତ୍ୟ ବାଣୀ
ନୂଆ ଶକ୍ତିଟିଏ ଦେବ ଯେ ଆଣି
ହେବ ମୁଁ ତାହାର ରାଣୀ ।

ହଠାତ୍ ଗୀତ ଶୁଣି ଗୋଲାପ ଫୁଲ ଚାହିଁ ଦେଖେତ ଜଣେ ନୂଆ ଆଗନ୍ତୁକା । ସେ କହିଲା—ଭଉଣୀ, ତୁମେ ଖୁବ ସୁନ୍ଦର ଗୀତ ଗାଇ ଜାଣ ତ !

ଏହା ଶୁଣି ମହୁ ମାଛିର ମନ ଭାରି ଖୁସି ହୋଇଗଲା । ସେ ଫୁଲେଇ ହୋଇ କହିଲା—ଆଉ କ’ଣ ମିଛରେ ମତେ ରାଣୀ କୁହନ୍ତି । ମୁଁ ଯେମିତି ସୁନ୍ଦର ମୋ ଗୀତ ବି ସେମିତି ସୁନ୍ଦର ।

ନିଜ ମୁହଁରେ ନିଜର ପ୍ରଶଂସା ଗାଉଥିବା କଥା ଜାଣି ଅନ୍ୟ ଫୁଲମାନେ ଏକ ସ୍ୱରରେ କହିଲେ—କାଇଁ, ଆଉଥରେ ଗାଇଲ । ଆମେ ତ ଜମାରୁ ଶୁଣିପାରି ନାହୁଁ ।

ରାଣୀ ମହୁମାଛି ନାକ ଟେକି କହିଲା—ମୋର ବେଳ କାହିଁ ଗାଇବାକୁ । ଡେଣେ ଯେ ମୋର କେତେ କାମ । କେତେ ନୂଆ ଜାଗା ବୁଲିବାର ଅଛି । କେତେ କଥା ସଂଗ୍ରହ କରିବାର ଅଛି । ମୁଁ କ’ଣ ତୁମ ପରି ଅଳସୁଆ ହୋଇଛି ଯେ, ଖାଲି ହସି ଖେଳି ଗୀତ ଗାଇ ଦିନ ବିତେଇ ଦେବି । ମୁଁ ଯାଏ ଲୋ ମା’ ।

ଗୋଲାପ ଫୁଲ କହିଲା—ହଁ ମ ଭଉଣୀ ! ଯିବ ତ, ଏମିତି ତରବର ହେଉଛ କିଆଁ ? ତମେ ପରା ଆମର ଅତିଥି । କଥାବାର୍ତ୍ତା, ହସଖୁସି କିଛି ନାହିଁ, ଏମିତି ଖାଲି ଖାଲି ଚାଲିଗଲେ ଆମ ମନ ଦୁଃଖ ହେବ ନାହିଁ ? ଆଜି ଆମେ ତମକୁ ଗୋଟିଏ ନୂଆ ଚିଜ ଖାଇବାକୁ ଦେବୁ । ଖାଇବ ଯେ, ସବୁଦିନେ ମନେ ପକାଉଥିବ ।

ରାଣୀ ମହୁମାଛି ଗୋଲାପ ଫୁଲ ପାଖକୁ ଲାଗିଯାଇ କହିଲା—ନୂଆ ଚିଜ ! ସେ ପୁଣି କେମିତିକା ?

ଫୁଲ କହିଲା—ଆସ, ମୋ ଗଭାରେ ବସ । ତୁମ ଶୁଣ୍ଢରେ ଶୋଷି ଚାଖି ଦେଖ, ଜାଣିବ ।

ରାଣୀ ମହୁମାଛି ଚଟ୍‌କିନା ଫୁଲ ଉପରେ ବସିଯାଇ ଲମ୍ବା ଶୁଣ୍ଢ ପୁରାଇ ରସ ଶୋଷିବାରେ ଲାଗିଲା । ଲାଗିଛି ଯେ ଲାଗିଛି । ଆଉ ଛାଡ଼ିପାରୁଛି କେତେବେଳେ ?

ଗୋଲାପ ଫୁଲ ପଚାରିଲା—କେମିତି ଲାଗୁଛି, ଭଉଣୀ?

ରାଣୀ ମହୁମାଛି ଟାଙ୍କରା ଫୁଟାଇ କହିଲା—ମିଠା, ଭାରି ମିଠା ।

ଖାଇ ଖାଇ ଯେତେବେଳେ ପେଟଟି ଟୁମେଇଗଲା, ଲଥ କିନା ବସି ପଡ଼ି କହିଲା—ଭଉଣୀ, ସତରେ ତମେ ଏମିତି ଏକ ଚଜ ସାଇତି ରଖିଛ ବୋଲି ମୁଁ ଆଗରୁ ଜାଣି ନଥିଲି । ଆଜିଠୁ ତମର ଆମର ସାଙ୍ଗ । ତମକୁ କମାରୁ ଭୁଲି ପାରିବି ନାହିଁ ।

ଗୋଲାପ ଫୁଲ କହିଲା—ଏହାର ନାମ ମହୁ । ଏହା ମୋର ନୁହେଁ, ଏହା ଆମ ଫୁଲ ରାଇଜର ଗର୍ବ । ଏଇଥି ପାଇଁ ଆମ ପ୍ରତି ସମସ୍ତଙ୍କର ଶରଧା ।

ଫୁଲ କଥା ଶୁଣି ମହୁ ମାଛିର ମନ ହିଂସାରେ ଜଳି ଗଲା । ସେ ମନେ ମନେ ଭାବିଲା, ଯେମିତି ହେଉ ଏ ଫୁଲ ମାନଙ୍କର ଗରବ ଭାଙ୍ଗିବ । ମହୁମାଛି କହିଲା—ଆଚ୍ଛା ଭଉଣୀ, ମୁଁ ଯାଉଛି । ପୁଣି କେବେ ଆସିବି ଯେ ମିଠା ମିଠା ଗୀତ ଗାଇ ଶୁଣାଇବି ।

ଗୋଲାପ ଫୁଲ କହିଲା—ହେଉ ଯାଅ, ମନେ ରଖିଥିବ, ଭୁଲିବ ନାହିଁ ।

ରାଣୀ ମହୁ ମାଛି ଉଡ଼ିଗଲା ତା' ବସାକୁ । ବସାରେ ପହଞ୍ଚି ଚୁପ୍ ଚାପ୍ ଗୋଟିଏ କୋଣରେ ମନ ମାରି ବସି

ରହିଲା ଅନ୍ୟ ମହୁମାଛି ମାନେ ଏହା ଦେଖି ରାଣୀ ମହୁମାଛି ଚାରିପଟେ ଘେରିଯାଇ କଅଁଳେଇ ପଚାରିଲେ—ରାଣୀ, ଆଜି ଏମିତି ମନକୁ ମାରି ବସିଛ କିଆଁ ?

ରାଣୀ ମହୁମାଛି ସାକୁଲେଇ ହୋଇ ଗାଇଲା—
"ଏଇ ମୋର ସତ୍ୟ ବାଣୀ
ନୂଆ ଚିଜଟିଏ ଦେବ ଯେ ଆଣି
ହେବ ମୁଁ ତାହାର ରାଣୀ ।"
ନଚେତ୍ ମୋ ସାଙ୍ଗରେ କେହି କଥା ହୋଇପାରିବ ନାହିଁ । ଏହା ଶୁଣି ସଭିଏଁ କହିଲେ -ସେଇ ନୂଆଁ ଚିଜଟି କ'ଣ କୁହ । ଆମେ ସଙ୍ଗେ ସଙ୍ଗେ ଆଣିଦେବୁ ।

ରାଣୀ ମହୁମାଛି କହିଲା—ମହୁ ।

ସମସ୍ତେ ଆଶ୍ଚର୍ଯ୍ୟ ହୋଇ କହିଲେ—ମହୁ ! ସେ ପୁଣି କି ଚିଜ ? କେଉଁଠି ମିଳେ ?

ରାଣୀ ମହୁମାଛି କହିଲା — ଏଇ ଯେଉଁ ବଗିଚା ଦେଖୁଛ ସେଇଠି ଜାତି ଜାତିକା କେତେ ସୁନ୍ଦର ସୁନ୍ଦର ଫୁଲ ସବୁ ଫୁଟିଛନ୍ତି । ସେଇମାନେ ଗର୍ଭରେ ମହୁ ସାଇତି ରଖିଛନ୍ତି ।

ସଭିଏଁ କହିଲେ—ବେଶ୍ ତୁମେ ଅପେକ୍ଷା କର । ଆମେ ଏଇ କ୍ଷଣି ମହୁ ନେଇ ଆସୁଛୁ ।

ଏହା କହି ମହୁମାଛି ମାନେ ବଗିଚାକୁ ଉଡ଼ିଗଲେ । ଫୁଲ ମାନଙ୍କ ଉପରେ ବସି ଗର୍ଭରୁ ମହୁ ଶୋଷିବାରେ ଲାଗିଲେ । ଏଥିରେ ଫୁଲମାନେ ବ୍ୟଥିତ ହେଲେ । ପ୍ରତିବାଦର ସ୍ୱର ଉଠାଇଲେ । ପଚାରିଲେ—ତୁମେ ଏପରି ଜୋର ଜବର ଦସ୍ତ ଆମ ସାଇତା ଧନ ଲୁଟି ନେଉଛ କିଆଁ ।

ମହୁମାଛି ମାନେ ସେମାନଙ୍କ କଥାକୁ ହସରେ ଉଡାଇ ଦେଇ କହିଲେ—ତୁମେ କ'ଣ ଜାଣି ନାହଁ, "ଜୋର ଯାହାର ମୁଲକ ତାର ?"

ଫୁଲମାନେ ଆଉ କରନ୍ତେ ବା କ'ଣ ? ମନ ଦୁଃଖରେ ଚୁପ୍ ଚାପ୍ ରହିଲେ । ଏତକ୍ଷ ବେଳେ ପବନ କନ କନ ହୋଇ ପୁଣି ସେମାନଙ୍କୁ ହଲେଇ ଦେଇ କହିଗଲା—ମନ ଦୁଃଖ କାହିଁକି କରୁଛ, ଭଉଣୀ ? ନିଜକୁ ଉଜାଡ଼ି ଅନ୍ୟକୁ ସଜାଡ଼ି ଦେବାରେ ଆନନ୍ଦ ଅଛି । ସେମାନେ ତୁମଠାରୁ ଯେତେ ମହୁ ନେବେ ସେତକ ଦୁନିଆ ପାଇଁ ସାଇତି ରଖିବେ । ତାହା ମଣିଷ ସମାଜର ଉପକାରରେ ଆସିବ । ସେଇଥି ପାଇଁ ତୁମେ ସବୁ ଧନ୍ୟ ହେବ ।

ମହୁମାଛିମାନେ ମହୁ ନେଇ ରାଣୀ ମହୁମାଛି ପାଖରେ ପହଞ୍ଚିଲେ । ରାଣୀ ମହୁମାଛି ଖୁସି ହୋଇ କହିଲା—ଆଜିଠାରୁ ମୁଁ ତୁମ ସମସ୍ତଙ୍କର ରାଣୀ ହୋଇ ରହିଲି । ମୁଁ ଘର ଜଗିବି ଏବଂ ପିଲାଛୁଆଙ୍କର ଯତ୍ନ ନେବି । ତୁମେ ନିତି ମହୁ ସଂଗ୍ରହ କରି ଆଣି ମତେ ଦେବ, ଆମେ ତାହା ସାଇତି ରଖିବା । ସଞ୍ଚୟ ଏକ ଭଲ କାମ । ଏହା ଦରକାର ବେଳେ କାମରେ ଲାଗେ ।

ଦିନେ ମଣିଷ ମହୁମାଛି ସାଇତି ରଖିଥିବା ମହୁର ସନ୍ଧାନ ପାଇଲା । "ଜୋର ଯାହାର ମୁଲକ ତାର" ନୀତିରେ ସେ ମହୁମାଛି ଠାରୁ ସଞ୍ଚିତ ମହୁକୁ ଛଡ଼ାଇ ନେଲା । ମହୁ-ମାଛିମାନେ କରନ୍ତେ ବା' କ'ଣ ? ତେବେ ସେମାନେ ମହୁର ଲୋଭ ଛାଡ଼ି ପାରିଲେ ନାହିଁ । ନିରାଶ ନ ହୋଇ ପୁଣି ମହୁ ସଂଗ୍ରହରେ ଲାଗି ଗଲେ ।

ପବନର କଥା ସତ୍ୟ ହେଲା । ମାନବ ସମାଜର ସେବା କରି କେବଳ ଫୁଲ ନୁହେ, ମହୁମାଛି ମାନେ ବି କାଲି କାଲିକୁ ଧନ୍ୟ ଏବଂ ଆଦରର ପାତ୍ର ହେଲେ ।



# "କଳା ମାଣିକ"



ବେଳ ରତ ରତ । ଗାଇ ଗୋରୁ ଧୂଳି ଉଡ଼େଇ ମନ ଆନନ୍ଦରେ ଘରକୁ ଫେରୁଥା'ନ୍ତି । ଗାଁ ଦାଣ୍ଡରେ ଝୁଲି ତା'ର ସାଙ୍ଗ ସାଥୀ ପିଲାଙ୍କ ସହିତ "ଲୁଣ ଶଗଡ ଚାଲି ଯିବା ପଥର ଗଡ଼" ଗାଇ ଗାଇ ଖେଳରେ ମାତିଥାଏ । ଅଜାଙ୍କ ପ୍ରତି କାହାରି ନଘା ନାହିଁ ।

ଝୁଲିର ଅଜା ଗାଁର ସର୍ବିଙ୍କର ଅଜା । ଅଜା ସେଦିନ ଜଣେ ଯଜମାନଙ୍କଠାରୁ ଠାକୁରଙ୍କ ନାମରେ ପାଞ୍ଚ ଟଙ୍କା ହାତ ପେଠ କରି ପାରିଥିଲେ । ସେଇଥିପାଇଁ ସେଦିନ କଳାମାଣିକରୁ ଆଚ୍ଛା କରି ଟେଳାଏ ଚଢ଼େଇ, ଚିନି ଚୂଡ଼ା, କଦଳୀ ଚକଟାରେ ପେଟଭରି, ଶାସନିଆ ଉଚ୍ଚ ଚାନ୍ଦନୀ ଉପରେ ଆରାମ ଚୌକିରେ ଆରାମ ନେଇ କବିସୂର୍ଯ୍ୟ ବଳଦେବଙ୍କ ରଚିତ ଚମ୍ପୂରୁ ପଦେ ପଦେ ବୋଲୁଥା'ନ୍ତି ।

ସତ କହିବାକୁ ଗଲେ ଅଜାଙ୍କ ମିଜାଜଟା ସେଦିନ ଭାରି ଖୁସି ଥିଲା । କାରଣ ଡ଼ବଲ୍ ଡ଼ୋଜ୍' ଅଫିମ ସାଙ୍ଗକୁ ମିଠା ପାଗଟା ଉଜାକୁ ପଞ୍ଜା ନକ୍ସ ପରି ଏକଦମ୍ ରାଜଯୋଟକ ହୋଇଯାଇଥିଲା ।

ସ୍ୟା' ଭିତରେ ସେ ଆରାମ ଚୌକି ଉପରେ ଝୁଲିବା ଆରମ୍ଭ କରି ଦେଇଥା'ନ୍ତି । ସତେ ଅବା ସେ ଏକ ପକ୍ଷୀରାଜ ଘୋଡ଼ା ଚଢ଼ି କେଉଁ ଏକ ଅଜଣା ରାଇଜରେ ପହଞ୍ଚି ସାରି-ଛନ୍ତି । ସେତେବେଳେ ସେ ସତେ ଯେପରି ବୁଢ଼ା ନଥିଲେ, ପୁରାପୂରି ଗଜା ଭେଣ୍ଡିଆ ।  ଦେହରେ ରାଜା ପରି ପୋଷାକ ଝଲମଲ ହେଉଥାଏ । ପକ୍ଷୀରାଜ ଘୋଡ଼ା ପବନ ବେଗରେ ଆଗକୁ ଛୁଟିଥାଏ ।

କିନ୍ତୁ ଏ କ'ଣ ? ଅଜା ଦେଖିଲେ ଆଗରେ ସମୁଦ୍ର ଲହରୀ ପରି ଲୋକ ମାଡ଼ି ଆସୁଛନ୍ତି । ଲୋକଙ୍କ ହାତରେ ଛତି ତରାସ, ଘଣ୍ଟ, କାହାଳୀ, ମୃଦଙ୍ଗ । ସବା ଆଗରେ ଏକ ବିରାଟ ହାତୀ ଝୁଲି ଝୁଲି ଆସୁଛି । ପକ୍ଷୀରାଜ ଘୋଡ଼ା ଯେମିତି ଲୋକଙ୍କ ନିକଟରେ ପହଞ୍ଚିଛି, ବିରାଟ ହାତୀଟା ପେଁ ଡ଼ାକ ଦେଇ ସୁନା କଳସଟା ଭେଣ୍ଡିଆ ଅଜାଙ୍କ ମୁଣ୍ଡ ଉପରେ ଢ଼ାଳି ଦେଇଛି । ସଙ୍ଗେ ସଙ୍ଗେ ଲୋକେ ଆନନ୍ଦରେ ଜୟଧ୍ୱନି କରି ତାଙ୍କୁ ଟେକି ନେଇ ସିଧା ହାତୀ ପିଠିରେ ବସାଇ ଦେଇଛନ୍ତି । ଅଜା ଖାଲି ବୋକାଙ୍କ ପରି ପାଟି କରୁଥା'ନ୍ତି ଆରେ, ଆରେ, ଏ କ'ଣ ? କିନ୍ତୁ କିଏ ଶୁଣୁଛି ? ଘଣ୍ଟା କାହାଳୀ ବଜାଇ ମହା ଆନନ୍ଦରେ ଶୋଭାଯାତ୍ରା ପଛକୁ ବାହୁଡ଼ିଲା । ଗୃହୁଁ ଗୃହୁଁ ଶୋଭାଯାତ୍ରା ପହଞ୍ଚିଲା ଯାଇ ଏକ ବିରାଟ ଉଆସ ନିକଟରେ । ବୋଧହୁଏ ରାଜାଙ୍କ ଉଆସ ହେବ । ହାତୀ ରାଜା ଉଆସର ଦ୍ୱାର ନିକଟରେ ଯେମିତି ପହଞ୍ଚିଛି, ଦାସୀ ପୋଇଲିଏ ଅଜାଙ୍କୁ ବନ୍ଦାପନା କରି ଉଆସ ଭିତରକୁ ପାଛୋଟି ନେଇ ଲାଗିଗଲେ ତାଙ୍କ ସେବାରେ । ଗୁଡ଼ାଏ ସୁନ୍ଦରୀ ଝିଅଙ୍କୁ ଚାରିପଟେ

ଦେଖି ଅଜା ଭାବିଲେ, ସେ ଯେମିତି ଗୋପରେ ଶ୍ରୀକୃଷ୍ଣ । ନାନା ବାଦ୍ୟ ବାଜଣା ପରେ ସିଂହାସନରେ ବସି ଆଡ଼ମ୍ବରପୂର୍ଣ୍ଣ ଦରବାରର ଚାରି ଆଡ଼କୁ ଚାହିଁଲାପରେ ସେ ନିଶ୍ଚିତ ହେଲେ ଯେ, କୌଣସି ଏକ ରାଜ୍ୟର ସେ ରାଜା । ସେତେବେଳେ ରାଜାଙ୍କ ମନ ଖାଲି ହରିଣ ଛୁଆ ପରି ଏଣେ ତେଣେ ଦୌଡ଼ୁଥାଏ ।

ଦରବାର ଶେଷରେ ନୂଆ ରାଜାଙ୍କର ଭୋଜନ ବ୍ୟବସ୍ଥା କରାଗଲା । ଅଜା ଖାଇବାକୁ ଯାଇଁ ଦେଖିଲେ, କ୍ଷୀରି, ଖେଚୁଡ଼ି, ମାଲପୁଆ, ଗୋଲାପଜାମ, ରସଗୋଲା, ବୁନ୍ଦିଆ, ଏମିତି ଜୀବନରେ ଦେଖି ନଥିବା ନାନା କିସମର ଖାଦ୍ୟ । ଅଜାଙ୍କ ପାଟିରୁ ଅମାନିଆ ଲାଳ ଗୁଡ଼ା ସରସର ବହିବାକୁ ଲାଗିଲା । ଆଗପଛ ବିଚାର ନକରି ସେଥିରୁ ମନଇଚ୍ଛା ପେଟେ ଖାଇନେଲେ । କେତେ ବା ଖାଇବେ ! ପେଟଟା ଭାରି ଲାଗିବାରୁ ସେ ଛାଟ୍ ହୋଇ ଗୋଟିଏ ପଲଙ୍କରେ ପଡ଼ିଗଲେ ।

ଏତିକିବେଳେ ତାଙ୍କର ହଠାତ୍ ଆମ ଆଈଙ୍କ କଥା ମନେ ପଡ଼ିଗଲା । ଅଜା ଭାବିଲେ, ଆଃ ସେ ଏଠି ଥାଆନ୍ତା କି ? ଖାଇ ଖାଇ ତାର ମନ ଭାଙ୍ଗି ଯାଇଥାନ୍ତା ! ସୁଆଦିଆ ଚିଜଟିଏ ଦିନେ ନପାଇ ମରିଗଲା । ଅଜା ଏମିତି ଆଈ କଥା ଭାବୁଥିଲା ବେଳେ ତାଙ୍କ ଆଖି ଆଗରେ ସତେ ଅବା ବିଜୁଳି ଝଲସିଗଲା । ସେ ସ୍ଥିର ହୋଇ ଚାହିଁଲେ । ସୁନ୍ଦରୀ ସ୍ତ୍ରୀଟିଏ ତାଙ୍କ ଆଖି ଆଗରେ ଠିଆ ହୋଇ କହୁଛି—ହଇହେ, ତମେ ରାଜା ହେଲ ବୋଲି ମୋତେ ଭୁଲିଗଲନା ? ମୁଁ ତମର ଏତେ ସେବା କରିଥିଲି, ଅଥଚ ମୋତେ ଟିକିଏ ଖବର ଦେଇ ପାରିଲନି ?

ଅଜା ପ୍ରଥମେ ଚିହ୍ନି ପାରିଲେନି । ନିଠେଇ ଦେଖିଲେ, ସେଇ ମୁହଁ, ସେଇ ନାକ, ସେଇ ଆଖି । ବାହା ହେଲା ଦିନ ଯେମିତି ନୂଆ ବୋହୂ ବେଶରେ ଆସିଥିଲା, ଠିକ୍ ସେହିରୂପ ।

ଅଜା ଆଉ କି ସମ୍ଭାଳି ପାଆନ୍ତି ? "ଆହା ମୋ ରାଣୀ" କହି ଆଣ୍ଡିକୁ ଧରିବାକୁ ଦୌଡ଼ିଗଲେ । କିନ୍ତୁ ଆଉ କି ସହଜରେ ଧରାଦିଏ ! ହସି ହସି ଦୂରକୁ ଘୁଞ୍ଚିଗଲା । ଅଜା ରାଗରେ ତମ ତମ ହୋଇ କହିଲେ—ମୋ ସାଙ୍ଗରେ ଖେଳୁଛୁ ? ଦେଖିବି, ଏଇଥର କୁଆଡେ ଯିବୁ ?

ଧରିଛି ଯେବେ ଛାଡ଼ିବି ନାହିଁ
ମରିବି ପଛେ ତୋହରି ପାଇଁ ।

ଗୀତ ପଦକ ଗାଇ ଏକା ଡ଼ିଆଁରେ ଆଣ୍ଡିକୁ ଯେମିତି ଜାବୁଡ଼ି ଧରି ନେଇଛନ୍ତି ପିଲାଏ ପାଟି କରି ଦୌଡ଼ି ଆସିଲେ । ଦେଖିଲେ, ଅଜା ଗୃନ୍ଧନୀ ତଳେ ପଡ଼ିଥିବା ଏକ ବଡ଼ ପଥରକୁ ଜାବୁଡ଼ି ଧରି ଅଚେତ ହୋଇ ପଡ଼ିଛନ୍ତି । ଆଣ୍ଠୁ, ଗଣ୍ଠି, ମୁହଁ, ହାତ ସବୁ ଖଣ୍ଡିଆ ଖାବରା ହୋଇଯାଇଛି । ଝୁଲି ଧାଇଁ ଯାଇ ଘରେ ଖବର ଦେଲା । ସଙ୍ଗେ ସଙ୍ଗେ ଅଜାଙ୍କୁ ପାଖ ସରକାରୀ ଡାକ୍ତର ଖାନାକୁ ନିଆଗଲା । ସେଇଠି ଅଜାଙ୍କ ଖଣ୍ଡିଆ ଗୋଡ ହାତ ମୁହଁ ଆଦି ମରାମତି କରିବାରେ ପୂରା ଦଶ ଦିନ ଲାଗିଲା । ଦଶ ଦିନ ପରେ ଅଜା ସୁସ୍ଥ ହୋଇ ଘରକୁ ଫେରିଲେ ।

ସେହିଦିନ ଠାରୁ ଅଜା ସବୁବେଳେ ପିଲାଙ୍କୁ କହନ୍ତି, ବୁଝିଲ ପିଲେ—

ମଦ ଗଞ୍ଜାଇ, ଅଫିମ ନିଶା,
ପାନ ବିଡ଼ି ତାଙ୍କ ସାଙ୍ଗ ସରିସା,
ମଣିଷକୁ ଦିଏ ନାନା ଦୁର୍ଦ୍ଦଶା ।

ଏଣୁ ସିଗାରେଟ, ପାନ, ବିଡ଼ି, ଗଞ୍ଜାଇ, ଅଫିମ, ମଦ ଆଦି ନିଶା ଦ୍ରବ୍ୟ ଜମା ଛୁଇଁବ ନାହିଁ । ଏ ସବୁ ଭଲ ମଣିଷକୁ ମୋ ଭଳି ହିନମାନିଆ ଅବସ୍ଥାରେ ପକାଇ ଦିଅନ୍ତି ।



# ଅଢ଼ଚଛିଆ ଭୀମ



ନାଟକ ହେବ । ସିଙ୍ଗପୁର ପିଲାଏ ଆମକୁ ‘ଛିଲ ଛିଲ’ କରି ଖାଲି ଉସ୍‌କେଇବାରେ ଲାଗିଥା'ନ୍ତି । ଉସ୍‌କାଉଥା'ନ୍ତି । ବେଟାଏ ଏଇଥର ଆମ ନାଟକ ଦେଖି ମାଛି ହୋଇଯିବେ । ଆମ ସ୍କୁଲ ପିଲାଙ୍କ ମତ ହେଲା ଏମିତି ଏକ ନାଟ ବଛା ହେଉ, ଯେଉଁଥିରେ କି ନୂତନ ଧରଣର ‘ଡ଼ିସୁମ ଡିସୁମ୍’ ଫାଇଟିଙ୍ଗ୍ ଥିବ । ଖାଲି ସେତିକି ନୁହେଁ । ଆମେ ଏଇଥର ‘ରଙ୍ଗବତୀ ରେକର୍ଡ ଡ଼ାନ୍ସ’ କରି ଦେଖାଇବା । ଯେମିତିକି ଦର୍ଶକଙ୍କ ଆଡୁ ଖାଲି ଫୁଲମାଳ ଆଉ ବାଃ ବାଃ ସବୁ ଅଜାଡ଼ି ହୋଇ ପଡ଼ିବ ।

ନାଟକର ନିର୍ଦ୍ଦେଶନା ଭାର ଆମ ନନ୍ଦିଆ ଭାଇନାଙ୍କୁ ଦିଆଗଲା । ଏକଦମ୍ କଡ଼ା ନିର୍ଦ୍ଦେଶକ । ନନ୍ଦିଆ ଭାଇନା ଠିକ୍ କଲେ ‘କର୍ଣ୍ଣାର୍ଜୁନ’ ନାଟକ ହେବ । ପାର୍ଟ ବଛା ହେଲା । ଭୀମ ପାର୍ଟ ପାଇଁ ମୋଟା ସୋଟା ପିଲାଟାଏ ଦରକାର । ଭୀମ ପାର୍ଟ କିଏ କରିବ ? ଦାସ ଘର ଶୁକୁଟା ସାଙ୍ଗେ ସାଙ୍ଗେ ଉଠିପଡ଼ି କହିଲା—ସାର, ମୁଁ ଭୀମ ହେବି । ତା ଚେହେରାଟା ଯେମିତି, ବୁଦ୍ଧିଟା ବି ସେମିତି ମୋଟା । ଶୁକୁଟା କହିଲା—ମୋ ପାର୍ଟ ଦେଖି ଯଦି ସିଙ୍ଗିପୁର ଟୋକାଏ

ଲାଜରେ ଉଠି ନ ପଳେଇବେ, ତେବେ ମୋ ନାଁରେ କୁକୁର ପୋଷିବେ । ନନ୍ଦଆ ଭାଇନା କହିଲେ—ଶୁକୁଟା ଭୀମ ପାର୍ଟ କରୁ । କାରଣ ଭୀମ ପାର୍ଟ ପାଇଁ ତା' ଚେହେରା ଠିକ୍ ମାନିବ ।

ଇହାରପରେ ଧୂମ୍ ଧାମରେ ଚାଲିଲା । ଶୁକୁଟା ଭୀମ ପାର୍ଟ ପାଇଛି, ତା ପାଦ ଆଉ ତଳେ ଲାଗୁନାହିଁ । ପାର୍ଟ ମୁଖସ୍ଥ କରି ବାଟରେ ଘାଟରେ, ଶ୍ରେଣୀରେ ଭୀମପରି ଅଭିନୟ କରି କମ୍ପେଇ ଦେଉଛି ।

ନାଟକ ଦିନ ନାଟକ ଆରମ୍ଭ ହେବା ପୂର୍ବରୁ ନନ୍ଦଆ ଭାଇନା କିଏ କେଉଁଠି କ'ଣ କରିବାକୁ ହେବ ଭଲଭାବେ ବୁଝେଇ ଦେଲେ । ମୁହଁରେ ରଙ୍ଗ ବୋଳି ବେଶ ହେବାରେ ଡେରି ହୋଇଗଲା । ତେଣୁ ଦର୍ଶକଙ୍କ ଆଡ଼ୁ ହୋ-ହାଲ୍ଲା ପାଟିତୁଣ୍ଡ ଆରମ୍ଭ ହୋଇଗଲା । ହଠାତ୍ ନନ୍ଦଆ ଭାଇନା ଦୌଡ଼ି ଆସି ପାଟିକଲେ- ମ୍ୟୁଜିକ୍ ଷ୍ଟାର୍ଟ କର, ସିନ୍ ଉଠାଅ । ସାଙ୍ଗେ ସାଙ୍ଗେ ଯୁଦ୍ଧ ବାଜା ଆରମ୍ଭ ହୋଇଗଲା— ଧିନ୍ଧାକ୍—ଧିନ୍ଧାକ୍—ଧିନ୍ଧାକ୍ । ହୁଇସିଲଟା ପିଁକନା ବାଜିବାରୁ ସିନ୍ ବାଲା ସିଁକନା ସିନ୍‌ଟାକୁ ଉଠାଇଦେଲେ । ପ୍ରଥମ ଦୃଶ୍ୟରେ ଭୀମ ଦୁଃଶାଙ୍କ ଢ଼ିସୁମ୍ ଢ଼ିସୁମ୍ ଫାଇଟିଙ୍ଗ୍ ହେବ । ଦୁଃଶାସନ ଭିଡ଼ିଭାଡ଼ି ହୋଇ 'ରେ ରେ ପାପିଷ୍ଠ' କହି ଷ୍ଟେଜକୁ ଦୌଡ଼ିଗଲା । ଅନ୍ୟ ପଟୁ ଭୀମ ଆସିବା କଥା । ଭୀମ କୁଆଡ଼େ ଗଲା, ଖୋଜିଲା ବେଳକୁ ଭୀମ ଝାଡ଼ା ପଳେଇଛି । ପିଲାଏ ଦୌଡ଼ିଲେ ଶୁକୁଟାକୁ ଖୋଜିବାକୁ । ଖରାପ ଅବସ୍ଥାରେ ତାକୁ ଟାଣି ଟାଣି ଆଣି ଷ୍ଟେଜକୁ ଠେଲି ଦେଲେ ।

ଶୁକୁଟା ଅତବଛୁଆ ରଡ଼ିଟାଏ କରି ଷ୍ଟେଜ୍ ଉପରକୁ ଡେଇଁ ପଡ଼ିଲା । ହଠାତ୍ ତାର ଆଖି ଦର୍ଶକଙ୍କ ଉପରେ ପଡ଼ିଗଲା । ଦେଖିଲା, ଲୋକ ଯେ ଲୋକ, ପେଣ୍ଡାଲ ଭରପୂର

ହୋଇ ରହିଛନ୍ତି । ସାମନା ସିଟ୍‌ରେ ହେଡ୍‌ସାର୍, ସ୍କୁଲ ଇନ୍‌ସପେକ୍‌ଟର ଓ ଅନ୍ୟାନ୍ୟ ଧୋବ ଧାଉଳିଆ ଭଦ୍ର ଲୋକ ମାନେ ବସିଛନ୍ତି । କ'ଣ ହେଲା କେଜାଣି, ତା ଦେହ ବରଡ଼ା ପତ୍ରପରି ଥରିବାକୁ ଲାଗିଲା । ତଣ୍ଟିପାଟି ସବୁ ଶୁଖି ଅଠା ଧରି ଗଲାଣି । ଯେତେ ଚେଷ୍ଟା କଲେ ବି ପାଟିରୁ ଡାଇଲାଗ୍ ବାହାରିବାକୁ ନାହିଁ । ସେମିତି ଭକୁଆ ପରି ଚାହିଁ ରହିଥାଏ ।

ଏଣେ ଦର୍ଶକଙ୍କ ଆଡ଼ୁ ହାସ୍ୟରୋଳ, ତା'ପରେ ଖଣ୍ଡିଆ ଚପଲ, ଗୋବର ଇତ୍ୟାଦି ଷ୍ଟେଜ ଉପରକୁ ଫୋପଡ଼ା ଆରମ୍ଭ ହୋଇଗଲା । ହଠାତ୍ ଦର୍ଶକଙ୍କ ଆଡ଼ୁ ଗୋଟିଏ ଖଣ୍ଡିଆ ଚପଲ ସାଏଁ କିନା ଆସି ଶୁକୁଟାର ନାକ ଉପରେ ବସିଗଲା । ସେ ଭୀଷଣ ରାଗରେ ଆରେରେ ପାପିଷ୍ଠ: ତାଙ୍କ ଚୋରି ଇଷ୍ଟ ।

କେ କରି ପାରିବ ରକ୍ଷାରେ" କହି ଦୁଃଶାକୁ ମାଡ଼ି ବସିଲା ।

ପୁରାଣରେ ଲେଖା ଅଛି ଯେ, ପ୍ରଥମ ଯୁଦ୍ଧରେ ଭୀମ ହାରିବେ । କିନ୍ତୁ ଶୁକୁଟା କି ଏହା ମାନିବା ପିଲା । ଦୁଃଶାକୁ ମାଡ଼ି ବସି ଦଣ କେଜିଆ ଢ଼ିସୁମ୍ ଢ଼ିସୁମ୍ ଫାଇଟିଙ୍ଗ୍ ଗୁଡ଼ାକ ଲଦି ଚାଲିଛି । ଦୁଃଶା ତଳେ ପଡ଼ି ବିକଳରେ ପାଟି କରୁଥାଏ— ଆରେ, ଶୁକୁଟା ! ଉଠ୍ । ପ୍ରଥମେ ତୁ ତଳେ ପଡ଼, ମୁଁ ତୋତେ ମାଡ଼ି:ବସି ମାରିବି, ଡ଼ାଇରେକ୍‌ଟର ପରା କହିଛନ୍ତି ।

ଭୀମ କହିଲା—ଯା'ବେ ! ଗୁଳିମାରୁ ସେ ଡାଇରେକ୍-ଟରକୁ । ମୁଁ କାହିଁକି ତଳେ ପଡ଼ିବି ? ମୁଁ କ'ଣ ତୋଠାରୁ କିଅଣ ଅଛି ? କେତେଥର ମାରି ମାରି ତୋତେ ଛତୁ କରେଇଛି । ଅବକା ଏତେ ଲୋକଙ୍କ ଆଗରେ ତୁ ମୋତେ ତଳେ ପକାଇ ମାରିବୁ ! ବାଃ, ହୋଇପାରିବ ନାହିଁ ।

ଏଣେ ଭୀମର ମାଡରେ ଦୁଃଶାର ଆଗ ଦାନ୍ତ ଗଣ୍ଡାକ ଝଡ଼ ରକ୍ତ ନଦୀ ଖେଳିଲାଣି । ଦୁଃଶା ସେତେବେଳକୁ ଷ୍ଟେଜ୍‌ରେ ଚିତ୍‌ପଟାଙ୍ଗ ହୋଇ ଚେତା ହରାଇ ସାରିଛି । ଭୀମ ମାରି ମାରି ଯେତେବେଳେ ଥକିଗଲା, ଦୁଃଶାକୁ ଲାତେ ପକାଇ ବୀର ପରି ଠିଆ ହୋଇପଡ଼ି ଗର୍ବରେ ନିଶ ମୋଡ଼ୁଥାଏ । ଏତିକିବେଳେ ଯାଇ ସମସ୍ତଙ୍କ ମୁଣ୍ଡରେ ଚେତା ପଶିଲା । ଲାଇଟ୍‌ବାଲା ଲାଇଟ୍ ଲିଭାଇ ଦେଲେ । ସିନ୍‌ବାଲା ସିନ୍ ପକାଇ ଦେଲେ । ଦୁଃଶା ମୁହଁରେ ପାଣି ଛିଟା ହେଲା । ହେଡ୍‌ସାର୍ ସାଙ୍ଗେ ସାଙ୍ଗେ ଦୁଃଶାକୁ ନେଇ ଡ଼ାକ୍ତରଖାନାକୁ ଦୌଡ଼ିଲେ ।

ଆଉକି ନାଟକ ହେବ ? ଏଣେ ସିଙ୍ଗିପୁର ପିଲାଏ ମଉକା ଦେଖି ଅସଲ ନାଟକ ଆରମ୍ଭ କରିଦେଲେ । ପଥର, ଖଣ୍ଡିଆ ଚପଲ ମାରି ଯାହା ଅନର୍ଥ କଲେ, ସେଥିରେ ଆମ ସଭିଙ୍କର ପିଳେହି ପାଣି ହୋଇଗଲା । ଯାହା ହେଉ ଖବର ପାଇ ପୋଲିସ୍‌ବାଲାଏ ସାଇରନ୍ ବଜାଇ ପହଞ୍ଚି ଯିବାରୁ ଅବସ୍ଥା ସମ୍ଭାଳି ହୋଇଗଲା । ନଚେତ୍ ସେଦିନ ଆମ ଭିତରୁ କେତେଜଣ ନିଶ୍ଚୟ ଖଣ୍ଡିଆ ଖାବରା ହୋଇଥାନ୍ତେ ।

ବୁଦ୍ଧି ଏବଂ ସାହାସ ଅଭାବରୁ ମଣିଷ ଏହିପରି ଲୋକ ହସା ହୋଇଥାଏ ।



# ମିଆଁଉ.....ମିଆଁଉ.....ମିଆଁଉ.....



ଆଗ କାଳର କଥା । ବାଘ ମାମୁଁ ଓ ପୁଷି ମାଉସୀ ଦୁଇ ଭାଇ ଭଉଣୀ । ଏକାଠି ଜଙ୍ଗଲରେ ରହୁଥିଲେ । ବାଘମାମୁଁ ନି'ତ ଜଙ୍ଗଲକୁ ଶିକାର ଖୋଜିବାକୁ ଯାଏ । ଯାହା ଆଣେ, ଦିହେଁ ବାଣ୍ଟିକୁଣ୍ଟି ଖାଆନ୍ତି । ବେଶ୍ ଆନନ୍ଦରେ ଥାଆନ୍ତି ।

ପୁଷି ମାଉସୀର ଦେହସାରା ରଙ୍ଗରଙ୍ଗିଆ ବାଳସବୁ ସଜେଇ ହୋଇ ରହୁଥାଏ । ସେ ଗୁଡ଼ିକ ଯେମିତି ଲମ୍ବା ସେମିତି ଚକ୍‌ଚକ୍‌ଣ । ଦେଖିବାକୁ ଭାରି ସୁନ୍ଦର । ଏଥିପାଇଁ ତା' ମନରେ ଭାରି ଗର୍ବ ଥାଏ । ସେ ନି'ତି ନିଜ ଦେହର ବାଳକୁ ସଫା ଓ ଚକ୍‌ଚକ୍‌ଣ କରି ସଜେଇ ଜଙ୍ଗଲ ସାରା ଘୂରି ବୁଲୁଥାଏ ।

ଦିନକର କଥା । ପୁଷି ମାଉସୀ ଜଙ୍ଗଲରେ ବୁଲୁବୁଲୁ ନିଜ ବସା ଠାରୁ ବହୁତ ଦୂରକୁ ଚାଲିଗଲା । ନୂଆ ଜାଗା ଦେଖିଲା, ନିକଟରେ ଏକ ସୁନ୍ଦର ପାଣି ଝରଟିଏ, କାଚକେନ୍ଦ ପରି ପାଣି । ପାଣି ଦେଖି ତାର ଇଚ୍ଛାହେଲା ଟିକେ ଗାଧୋଇ ମନକୁ ହାଲୁକା କରିନେବା ପାଇଁ । ସଙ୍ଗେ ସଙ୍ଗେ ସେ ପାଣିଝରକୁ

ଲମ୍ଫଦେଲା । କିନ୍ତୁ ଯେମିତି ପାଣି ଭିତରକୁ ପଶିଛି, "ଓଃ— ମରିଗଲି', ବାପଲୋ ମା'ଲୋ" ବିକଳରେ ରଡ଼ି କରି କୂଳକୁ ଉଠି ଆସିବାକୁ ବେଳ ପାଇଲା ନାହିଁ । ଉପରକୁ ଉଠି ଆସି ମନକୁ ମନ ଗରଗର ହୋଇ କହିଲା—ଏ ଗୁଡାକ ପାଣି ନା ନିଆଁ ରଡ଼ି !

ଏହି ସମୟରେ ଠେକୁଆଟିଏ ପାଖ ବରଗଛ ଓହଳରୁ ତଳକୁ ଡେଇଁପଡ଼ି ତାଳିମାରି 'ଠୋ' 'ଠୋ' ହସି କହିଲା— କ'ଣ ହେଲା, ମାଉସୀ ? ଏମିତି ବିକଳରେ ରଡ଼ି ଛାଡ଼ିଲ କିଆଁ ?

ପୁଷି ମାଉସୀ ଖପା ହୋଇ କହିଲା—କିରେ ପୁଅ, ତତେ ଭାରି ମଜା ଲାଗିଛି ! ତୋର କ'ଣ ଗଲା ?

ଠେକୁଆ କହିଲା—ତମେ ରାଗିଲ କି ମାଉସୀ ? ହେଲେ ଟିକିଏ ନିଜ ଦେହ ପ୍ରତି ନଜର ପକାଅ, ଜାଣିବ ।

ପୁଷି ମାଉସୀ ନିଜ ଦେହକୁ ଚାହିଁ ଦେଖେତ ଦେହରେ ଜମା ବାଳ ନାହିଁ । ସବୁତକ ଝରି ପାଣିରେ ଧୋଇ ହୋଇ ସଫା ହୋଇ ଯାଇଛି । ତାର ଏତେ ସୁନ୍ଦର ବାଳ ଗୁଡ଼ିକୁ ହରେଇ ସେ କି ଆଉ ସମ୍ଭାଳି ଯା'ନ୍ତା ! ଏକଦମ୍ ପଞ୍ଚମ ସ୍ୱରରେ ରଡ଼ି ଆରମ୍ଭ କରିଦେଲା ।

ଠେକୁଆ କହିଲା—ମାଉସୀ, ଏକା ତମରି ନୁହେଁ, ତୁମପରି ଅନେକ ପଶୁପକ୍ଷୀ ଜାଣି ନପାରି ଏହି ଝରି ପାଣିରେ ଗାଧୋଇ ଥାଆନ୍ତି । ସେମାନଙ୍କ ଅବସ୍ଥା ବି ତମ ପରି ହୋଇ- ଥାଏ । ଏହି ଝରିର ପାଣି ଅନ୍ୟାନ୍ୟ ଝରି ପାଣିଠାରୁ ଭିନ୍ନ । ଏ ପରା ପାତାଳ ଗାଇକରୁ ଭୂଇଁ ଫୁଟାଇ ଉପରକୁ ଆସିଛି । ସେଇଥିପାଇଁ ଏ ପାଣି ଭାରି ଗରମ । ଖାଲି ସେତିକି ନୁହେଁ, ଏହି ପାଣିର କେତେକ ବିଶେଷ ଗୁଣ ଅଛି । ଏଥିରେ ଗାଧୋଇଲେ ଅନେକ ରୋଗ ଭଲ ହୋଇଥାଏ ।

ଏହା ଶୁଣି ଝିଟିପିଟିଟାଏ ବରଗଛ ଗଣ୍ଡିରୁ ତଳକୁ ଖସି ଆସି କହିଲା—'ସତ୍—ସତ୍' ।

ପୁଷି ମାଉସୀ ବିକଳ ହୋଇ ପଚାରିଲା—ତେବେ ମୁଁ ଏବେ କ'ଣ କରିବ ?

ଠେକୁଆ କହିଲା—ତମେ ଗୋଟାଏ କାମ କର । ଜଙ୍ଗଲ ପାଖ ଗାଁରେ ଜଣେ ବେଶକାର ରହୁଛନ୍ତି । ସେ ନାଟକରେ ନାଟୁଆ ମାନଙ୍କୁ ଭଲକିଭଲ ବେଶ ସଜାଇବାରେ ଓସ୍ତାଦ । ତାଙ୍କ ପାଖକୁ ଯା' । ସେ ତମ ଦେହରେ ଏତେ ସୁନ୍ଦର ବାଳ ସବୁ ଖଞ୍ଜିଦେବେ ଯେ, ଅସଲି କି ନକଲି ଜମା ବାରି ହେବ ନାହିଁ । କିଛି ଦିନ ପରେ ତମ ଦେହରେ ନୂଆଁ ବାଳ ଛାଏଁ କଅଁଳ ଯିବ । ସେତେବେଳେ ଆଉ ଖଞ୍ଜା ବାଳ ଦରକାର ପଡ଼ିବ ନାହିଁ ।

ପୁଷି ମାଉସୀ ଠେକୁଆ କଥା ମାନି ବେଶକାରଙ୍କୁ ଖୋଜି ଖୋଜି ଗାଁ ଆଡ଼କୁ ମୁହାଁଇଲା । ବେଶକାରଙ୍କ ନିକଟରେ ପହଞ୍ଚି ନେହୁରା ହୋଇ କହିଲା—ମିଆଁଉ—ମିଆଁଉ—ମିଆଁଉ

ସେନେହ ଟିକିଏ ନେଉ
ବାଳ ପୁଞ୍ଜିଏ ଦେଉ ।

ବେଶକାର ଜଣକ ଭାରି ଭଲ ଲୋକ । ସେ ପୁଷି ମାଉସୀର ହୀନିମାନିଆ ଅବସ୍ଥା ଦେଖିଲେ । ତାଙ୍କ ମନରେ ଦୟା ଆସିଲା । ତା ଦେହରେ ରଙ୍ଗିନ ଚକଚକିଆ ବାଳସବୁ ଖଞ୍ଜିଦେଲେ ।

ପୁଷି ମାଉସୀ ଏବେ ପୂର୍ବ ଆପେକ୍ଷା ଆହୁରି ସୁନ୍ଦର ଦେଖାଗଲା । ତା' ମନ ଭାରି ଖୁସି । ସେ ବେଶକାରଙ୍କୁ ଜୁହାର କରି ବିଦାୟ ନେବାକୁ ଚାହିଁଲା । ଏତିକିବେଳେ ମୂଷାଟିଏ ଘର ଛାଡ଼ ଉପରୁ ଡେଇଁ ପଡ଼ି ବେଶକାରଙ୍କ କାନରେ କ'ଣ ସବୁ ଚୁପ୍‌ଚୁପ୍ କହି ପୁଣି ଛାଡ଼ ଉପରକୁ ଚାଲିଗଲା ।

ବେଶକାର ସଙ୍ଗେ ସଙ୍ଗେ ଧଡ଼ାସ କରି ଦାଣ୍ଡ କବାଟକୁ ବନ୍ଦ କରି ଦେଇ କହିଲେ—ତୁ କେମିତିକା ଜନ୍ତୁ ହୋ । ମୁଁ ତୋ ଦେହରେ ଏତେ ସୁନ୍ଦର ବାଳସବୁ ସଜେଇ ବେଶକଲି । ତୁ କିଛି ଦାମ୍ ନ ଦେଇ ଚାଲି ଯାଉଛୁ ?

ପୁଷି ମାଉସୀ ମନ ଦୁଃଖରେ କହିଲା—ମୋ ପାଖରେ ତ ଏବେ କିଛି ନାହିଁ । କ'ଣ ବା ଦେବ ?

ଏହି ସମୟରେ ପୁଣି ମୂଷା ବେଶକାରଙ୍କ କାନ ପାଖକୁ ଲାଗିଆସି କ'ଣ ସବୁ ଚୁପ୍ ଚୁପ୍ କହିଦେଇ ଚାଲିଗଲା ।

ବେଶକାର କହିଲେ—ଏ କଳି ଯୁଗରେ କି ବିଶ୍ୱାସ ହୋ ? ତୁ ଯଦି ଏବେ ଦାମ୍ ଦେଇ ନପାରିବୁ, ତେବେ ମୁଁ ତୋତେ ଛାଡ଼ିବ ନାହିଁ ।

ପୁଷି ମାଉସୀ ବଡ଼ ଅଡୁଆରେ ପଡ଼ିଲା । ତାକୁ କିଛି ବୁଦ୍ଧି ବାଟ ଦେଖାଗଲା ନାହିଁ । ତା'ର ସବୁତିକ ରାଗ ଯାଇ ଠୁଳ ହେଲା ମୂଷା ଉପରେ । ତା'ରି ଯୋଗୁଁ ଏ ବିପଦ ।

ପୁଷି ମାଉସୀ ଚୁପ୍ ରହିବାର ଦେଖି ମୂଷା ପୁଣି ବେଶକାରଙ୍କ କାନ ପାଖରେ କ'ଣ ସବୁ କହିଦେଇ ଚାଲି-ଯିବାକୁ ବସିଥିଲା । ପୁଷି ମାଉସୀର ନଜର ଯେମିତି ତା ଉପରେ ପଡ଼ିଛି, ଏକା ଡିଆଁକେ ରାଗରେ ପାଟି ପକାଇ ମୂଷାକୁ ଝାମ୍ପି ଆଣିଲା । ତାପରେ ତାକୁ କାଟୁରୁ ମାଟୁରୁ କରି ଚୋବାଇ ଗିଳିଦେଲା ।

ଏହା ଦେଖି ବେଶକାର ମନେ ମନେ ଭାରି ଖୁସି ହେଲେ । ସେ ଭାବିଲେ—'ଈଶ୍ୱର ଯାହା କରନ୍ତି ପ୍ରାଣୀର ମଙ୍ଗଳ ସକାଶେ ।'' ମୂଷା ଗୁଡ଼ାକ ମୋ ଘରେ ରହି ବଂଶ ବଢ଼ାଇବାରେ ଲାଗିଥିଲେ । ଏଣିକି ଏହି ବିରାଡ଼ିଟିକୁ ପାଖରେ ରଖିଲେ ମୂଷାଙ୍କ ଦାଉରୁ ରକ୍ଷା ମିଳି ପାରିବ ।

ମଲ୍ ଲୋଡୁଥିଲା କାକର ପାଣି, ବଇଦ କହିଲା ଦେ' ତୋରାଣି ।
ଏଇଟା ହେଲା ଅସଲ ମଉକା ।

ଏହା ଭାବି ସେ କହିଲେ—ତୁ ଯଦି ଦାମ୍ ଦେଇ ପାରିବୁ ନାହିଁ, ତେବେ ଋଣ ଶୁଝିବା ଯାଏଁ ମୋ ଘରେ ରହିବୁ । ମୂଷା ତୋର ଶତ୍ରୁତା କରୁଛି । ତେଣୁ ଘରେ ଯେତେ ମୂଷା ଅଛନ୍ତି ତୁ ସମସ୍ତଙ୍କୁ ମାରି ଆହାର କର । ଖାଲି ସେତିକି ନୁହେଁ, ମୁଁ ତୋତେ ନିତି ଦୁଧ, ଭାତ, ମାଛ ଖାଇବାକୁ ଦେଉଥିବି । ମନ ଖୁସିରେ ମୋ ଘରେ ରହ ।

ପୁଷି ମାଉସୀ ବେଣକାରଙ୍କ କଥାରେ ଅଗତ୍ୟା ରାଜି ହେଲା । ସେହିଦିନ ଠାରୁ ସେ ମଣିଷ ସାଙ୍ଗରେ ରହି ଆସୁଛି । ଆଉ ଘରେ ରହୁଥିବା ମୂଷାଙ୍କ ବଂଶ ନିପାତ କରିବାରେ ଲାଗିପଡ଼ିଛି ବଣକୁ ଫେରିଯିବା କଥା ତାର ଆଉ ଜମା ମନେ ପଡ଼ିଲା ନାହିଁ ।



# ମାଙ୍କଡ଼ ଦେଲା ଚାପଡ଼



ଅଢ଼େଇବର ଗାଁରେ ମାଣ୍ଡୁ ଓ କାଅଁଆ ହଲକୁ କିଏ ନ ଜାଣେ ? ଠିକ୍ ଆଡାପି ବାଡାପି ଯୋଡ଼ି । ଭାରି ବଦ୍‌ମାସ । ନାଁକୁ ସିନା ପାଠପଢ଼ା, ହେଲେ ପାଠ ପଢ଼ାରେ ଦିହିଁଙ୍କର କମା ମନ ନଥାଏ । ପଢ଼ାବେଳେ କାହାର ଚୁଟି ଟାଣିବା, କାହା କାନରେ କାଠି ପୁରାଇବା, କାହା ଉପରକୁ କାଗଜ ଗୁଳା, ଗୋଡ଼ି ଫୋପାଡ଼ିବା ଆଦି କାର୍ଯ୍ୟରେ ଏମାନେ ବ୍ୟସ୍ତ ରହନ୍ତି । ଏଥିପାଇଁ ପ୍ରତିଦିନ ମାଷ୍ଟ୍ରଙ୍କଠୁଁ ଗାଳିମାଡ଼ ଖାଆନ୍ତି ।

ବିଦ୍ୟାଳୟ ବାହାରେ ମଧ୍ୟ ସେହିଭଳି ଉପଦ୍ରବ । ରାସ୍ତା ଉପରେ କଦଳୀ ଚୋପା, ଭଙ୍ଗାକାଚ ପକାଇବା ଠାରୁ ଆରମ୍ଭ କରି ବିଜୁଳି ଖୁଣ୍ଟର ବଲ୍‌ବ୍‌କୁ ଟେକା ଫୋପାଡ଼ିବା ଯାଏଁ ଏମାନଙ୍କ ଅନେକ କାର୍ଯ୍ୟକ୍ରମ ।

ଛୁଟି ଦିନରେ ଉଭୟେ ଯାଇ ଗାଁ ପାଖ ଆମ୍ବ ତୋଟାରେ ଆଡ୍‌ଡ଼ା ଜମେଇ ଦିଅନ୍ତି । ସେଠାରେ ଏଣ୍ଡୁଅ, ଗୁଣ୍ଡୁଚି ମୂଷା, ବେଙ୍ଗ, ସାପ, ନେଉଳ ଏବଂ ଚଢ଼େଇ ସନ୍ଧାନ

କରି ମାରିବା, ମାଙ୍କଡ଼ ହୁରୁଡ଼େଇବାରେ ସେମାନଙ୍କ ମନ ହୁଏ ଖୁସି ।

ଦିନକର କଥା । ସେତେବେଳେ ପ୍ରକାଣ୍ଡଟି ସରି ଆସୁଥାଏ । ସେମାନେ ଆମ୍ବତୋଟାରେ ଏଣ୍ଡୁଅ ଖୋଜି ବାଡ଼େଇବାରେ ଲାଗିଥାନ୍ତି । ସେମାନେ ଶୁଣି ଆସିଥାନ୍ତି ମଲା ଏଣ୍ଡୁଅକୁ ମାଟିରେ ପୋତି କିଛିଦିନ ପରେ ଖୋଳିଲେ ସେଥିରୁ କଉଡ଼ି ବାହାରିବ । ହଠାତ୍ ମାଙ୍କଡ଼ର 'ହୁଁକାର' ଗର୍ଜ ଶୁଣି ମାଣ୍ଡୁ ଉପରକୁ ଚାହିଁ ଦେଖେତ ଆମ୍ବ ଗଛ ଉପରେ ମାଆ ମାଙ୍କଡଟିଏ ଏ ଡାଳରୁ ସେ ଡ଼ାଳ ହେଉଛି । ତା' ପେଟ ତଳେ ଜନମ କଲା ଛୁଆଟାଏ । ମାଣ୍ଡୁ, କାହ୍ନିଆର ଭୟରେ ଏଇ କେତେଦିନ ହେଲା ମାଙ୍କଡ଼ମାନେ ଭୁଲରେ ସୁଦ୍ଧା ତୋଟା ପାଖ ମାଡ଼ୁ ନଥିଲେ । ବୋଧହୁଏ ଏହି ମାଙ୍କଡ଼ଟା ନୂଆ ନୂଆ ଆସିଛି । ସେମାନଙ୍କ ପରିଚୟ ପାଇନାହିଁ । ନଚେତ୍ ସେମାନେ ଥାଉ ଥାଉ ନିର୍ଭୟରେ ତୋଟାରେ ଆସି ଖେଳ କୁଦ କରନ୍ତା କେମିତି ? ମାଙ୍କଡ଼ ଦେଖି ମାଣ୍ଡୁ କି ଆଉ ଧୈର୍ଯ୍ୟ ଧରେ ? କାହ୍ନିଆକୁ ଏଣ୍ଡୁଅ ବୋଧରେ ଲଗେଇ ଦେଇ ଟେକା ପଥର ଫୋପାଡ଼ି ସେ ମାଙ୍କଡ଼ ପିଛା ଲାଗିଗଲା । ମାଙ୍କଡ଼ ଡେଇଁ ଡେଇଁ ଯାଇ ତୋଟା ସୀମାରେ ଥିବା ଏକୁଟିଆ ଗଛ ଉପରେ ପହଞ୍ଚିଗଲାଣି ।

ତୋଟା ଶେଷରେ ମୁଣ୍ଡିଆଟାଏ । ମୁଣ୍ଡିଆକୁ ଲାଗି ରହିଛି ଯୋଗୀ ପାହାଡ଼ । ମୁଣ୍ଡିଆ ଏବଂ ଯୋଗୀ ପାହାଡ ମଝିରେ ଏକ ବିରାଟ ଖାଇ । କେତେ ନାହିଁ କେତେ ଗଭୀର । ଅନ୍ତ ପାଉନାହିଁ । ମାଙ୍କଡ଼ ଦେଖିଲା, ଖାଇକୁ ଡେଇଁ ଆରପଟ ପାହାଡ଼କୁ ନଗଲେ ତାର ରକ୍ଷା ନାହିଁ । ନିଜର ସମସ୍ତ ବଳ ଖଟେଇ ହୁଁକାର ନାଦ କରି କୁଦା ମାରିଲା । ଏକା ଡ଼ିଆଁରେ ଯାଇ ଯୋଗୀ ପାହାଡ ଉପରେ ଠିଆ ହେଲା । କିନ୍ତୁ ହାୟ ! ଇତି ମଧ୍ୟରେ ତାର ପ୍ରିୟ ସନ୍ତାନଟି ନିଜକୁ ସମ୍ଭାଳି ନପାଇ

ପେଟତଳୁ ଖସିପଡ଼ୁଛି ସେଇ ଖାଇ ଭିତରେ । ମା' ମାଙ୍କଡ଼ ଅଣ୍ଟାଳ ଦେଖେଣ ଛୁଆ ନାହିଁ । ଖାଇ ଭିତରକୁ ଚାହିଁ ଦେଖିଲା ଛୁଆର ଚିହ୍ନବର୍ଣ୍ଣ ଦେଖାଯାଉ ନାହିଁ । ଗାଲରେ ହାତ ଦେଇ ଲଥ୍‌କିନା ବସିପଡ଼ିଲା । ଯେତେହେଲେ ମା' । ସନ୍ତାନକୁ ହରେଇ ଧୈର୍ଯ୍ୟ ଧରନ୍ତା କିପରି ? ଆଖିରୁ ତାର ଧାର୍ ଧାର ଲୁହ ନିଗିଡ଼ି ପଡ଼ିଲା । ଏତିକିବେଳେ ମାଣ୍ଡୁ ବିଜୟ ଦର୍ପରେ ଠିଆ ହୋଇ ତାଳିମାରି 'ହୋ' 'ହୋ' ହୋଇ ହସୁଥାଏ ।

ଏହି ଘଟଣାର କିଛିଦିନ ପରର କଥା । ଦିନଟି ଥିଲା ରବିବାର । ମାଣ୍ଡୁ କାଆଁଆ ହଲ ମୁଣ୍ଡିଆ ଉପରେ ଥିବା ଜାମୁକୋଳି ଗଛରୁ ଜାମୁ ତୋଳି ଖାଇବା ପାଇଁ ବାହାରି-ପଡ଼ିଲେ । ବାଟରେ ମାଣ୍ଡୁ କାଆଁଆକୁ ସେଦିନର ଘଟଣା ଫୁଲି ଫୁଲି ବର୍ଣ୍ଣନା କରୁ କରୁ ଦିହେଁ ଯାଇ ଏକୁଟିଆ ଗଛ ନିକଟରେ ପହଞ୍ଚି ସାରିଥାନ୍ତି । ଖସ୍ ଖସ୍ ଶବ୍ଦ ଶୁଣି କାଆଁଆ ଗଛ ଉପରକୁ ଚାହିଁ ଦେଖେଣ ବିରାଟ ଏକ ମାଙ୍କଡ଼ ଗଛ ଉପରେ ବସି ତାଙ୍କର ଆଡ଼କୁ କଟମଟ କରି ଚାହିଁ ରହିଛି । ଆଖି ଦୁଇଟା ତାର ପାଚି ଲାଲ ଟହ ଟହ ଦେଖା ଯାଉଥାଏ । କାଆଁଆ ମନରେ ଆଶଙ୍କା ଉପୁଜିଲା । ନିଶ୍ଚୟ ଏହାର ମତଲବ୍ ଭଲ ନୁହେଁ । ଏତିକିବେଳେ ମାଣ୍ଡୁ ଧାଇଁ ଯାଇ ଠିକ୍ ମୁଣ୍ଡିଆ ଦାଢ଼ରେ ଠିଆ ହୋଇ ଡାକି ପକାଇଲା—କାଆଁଆ ଭାଇ ଦେଖିବୁ ଆ, ଏଇଠି ପରି ମାଙ୍କଡ଼ ମା' ପେଟତଳୁ ଛୁଆଟା ଖସି ପଡିଥିଲା । କାଆଁଆ ମାଣ୍ଡୁ ଆଡ଼କୁ ଚାହିଁ ପୁଣି ଗଛ ଉପରକୁ ମୁହଁ ଫେରାଇ ଦେଖେଣ ମାଙ୍କଡ଼ଟା ସତେ ଯେମିତି କିଛି ଗୋଟାଏ କାଣ୍ଡ କରିବାକୁ ପ୍ରସ୍ତୁତ ହେଉଛି । ସେ ଭୟରେ ଚିତ୍କାର କଲା—ମାଣ୍ଡୁ ଭାଇ, ଶୀଘ୍ର ଚାଲି ଆସେ, ସେହି ମାଙ୍କଡ଼ଟା ତୋ ପିଛା ଧରିଛି । କିନ୍ତୁ ମାଣ୍ଡୁ ଏହା ଶୁଣି ଫେରି ଆସିବା ପାଇଁ ବେଳ ପାଇଲା ନାହିଁ । ଆଖି ପିଛୁଳାକେ ମାଙ୍କଡ ହୁଁକାର ନାଦ କରି ଏକା ଡ଼ିଆଁରେ

ମାଣ୍ଡୁ ଦେହରେ ଧକ୍କା ଲଗେଇ ଯାଇ ପହଞ୍ଚିଲା ଆରପଟ ଯୋଗୀ ପାହାଡ଼ ଉପରେ । ମାଣ୍ଡୁ ଧକ୍କା ଖାଇ ପଲକ ମଧ୍ୟରେ ତଳ ପଡ଼ିଲା ସେହି ଖାଇ ଭିତରେ । କାଆଁଆ ଏହା ଦେଖି ପ୍ରାଣ ବିକଳରେ ଦୌଡ଼ିଲା ଘରକୁ । କିଛି ବାଟ ଦୌଡ଼ି ଆସିବା ପରେ ହଠାତ୍ ରାସ୍ତା ଉପରେ ଦେଖେ ତ ସେହି ମାଙ୍କଡ଼ଟା ଯମଭଳି ବାଟ ଆଗୁଳି ଠିଆ ହୋଇଛି । କାଆଁଆର ପିଳେହି ପାଣି । ସାଙ୍ଗେ ସାଙ୍ଗେ ମାଙ୍କଡ଼ଟା ଝପଟି ଆସି ଭୀଷଣ ରାଗରେ ଢୋ ଢୋ କରି ଦି' ଚାପୁଡ଼ା କଷିଦେଲା କାଆଁଆର ଦୁଇ ଗାଲ ଉପରେ । ତାପରେ ଗାଲରୁ ପୁଳାଏ ମାଂସ ରାମ୍ପୁଡ଼ି ନେଇ ଚାଲିଗଲା । କାଆଁଆ ଚେତା ହରାଇ ଚିତ୍‌ପଟାଙ୍ଗ୍ ।

ବୋଧହୁଏ ଏହାହିଁ ଦିହିଙ୍କ ବଦ୍‌ମାସିର ଉପଯୁକ୍ତ ଶାସ୍ତି ଥିଲା । ମାଣ୍ଡୁର ପ୍ରାଣ ଗଲା । କାଆଁଆ ଗାଲରେ ରହିଗଲା ମାଙ୍କଡ଼ର ଶାସ୍ତି ଚିହ୍ନ । ଆଜି ବି ସେହି ଦାଗ ଅନ୍ୟକୁ ସତର୍କ କରିଦିଏ—"ଯେସାକୁ ତେସା" ।



# ଯାହା ବୁଝିଲୁ ଝୁମ୍ପୁଆରୁ



ପଣ୍ଡିତ ହରି ଶର୍ମାଙ୍କ ପ୍ରତି ଲୋକଙ୍କର ଢେର ଖାତିର୍ । ସେ ଯାହା କହିବେ ବେଦର ଗାର । ରାଜାଙ୍କର ଗୁରୁ ଯେତେବେଳେ, ପାଣ୍ଡିତ୍ୟ କଥା ଆଉ କ'ଣ କହିବା ? ଅଗାଧ ପାଣ୍ଡିତ୍ୟ ।

ରାଜଗୁରୁ ଆପଣେ ନିଜ ଘରେ ଗୋଟିଏ ଗଧ ପୋଷି-ଆ'ନ୍ତି । ସେ ନିଜେ ଗଧଟିର ଯତ୍ନ ନିଅନ୍ତି । ସତେ ଯେମିତି ଗଧଟି ତାଙ୍କ ପରିବାର ଭିତରୁ ଜଣେ । ପଣ୍ଡିତେ ନିତି ଘରେ ଠାକୁରଙ୍କ ପୂଜା ପାଠ ଇତ୍ୟାଦି କରନ୍ତି । ଠାକୁରଙ୍କ ପୂଜା-ପାଠ ବେଳେ ସେ ଶଙ୍ଖ ଫୁଙ୍କନ୍ତି । ସେ ଯେତେବେଳେ ଶଙ୍ଖ ଫୁଙ୍କିବା ଆରମ୍ଭ କରନ୍ତି, ତାଙ୍କର ପ୍ରିୟ ଗଧଟି ଆନନ୍ଦରେ କୁରୁଳି ଉଠି ରାହା ଧରି ବୋବାଳି ଛାଡେ ଶଙ୍ଖର ସ୍ୱର ଅମିଲେ ଯାଇ ତାର ବୋବାଳି ବନ୍ଦ ହୁଏ । ତେଣୁ ରାଜଗୁରୁ ଆପଣେ ଗଧଟିର ନାଁ ଦେଇଥାନ୍ତି 'ଶଙ୍ଖରାଜା' । ସ୍ନେହରେ ଡାକନ୍ତି ରାଜା ।

ହଠାତ୍ ଦିନେ ଗଧଟିକୁ କ'ଣ ଗୋଟାଏ ବାଧିକ ହେଲା । ଅଚିହ୍ନା ବ୍ୟାଧି । ପଣ୍ଡିତେ ବ୍ୟସ୍ତ ହେଲେ । କେତେ

କୁଆଡ଼ୁ କ'ଣ ସବୁ ଔଷଧ ଆଣି ଗଧଟିକୁ ଖୁଆଇଲେ । ନାନା ଉପଚାର କଲେ । କିନ୍ତୁ ଅନ୍ଧାରରେ ବାଡ଼ି ବୁଲେଇବା ସାର ହେଲା । ପଣ୍ଡିତଙ୍କ ସବୁ ଚେଷ୍ଟା ଫସର ଫାଟିଗଲା । ଗଧଟି ଶେଷରେ ପଣ୍ଡିତଙ୍କୁ ଶୋକ ସାଗରରେ ଭସାଇ ଦେଇ ଆରପୁରକୁ ଚାଲିଗଲା । କୋହ ସମ୍ଭାଳି ନପାରି ପଣ୍ଡିତେ ବହେ କାନ୍ଦିଲେ । ହେଲେ କ'ଣ ହେବ ? 'ମିଛ ମାୟା ଏ ସଂସାର, କେହି ନୁହେ କାହାର ।' ଜନ୍ମ ହେଲେ ମୃତ୍ୟୁ ନିଶ୍ଚିତ । ପରେ ଶାସ୍ତ୍ର ଜ୍ଞାନରେ ନିଜକୁ ନିଜେ ଶାନ୍ତ୍ୱନା ଦେଇ ସେ ଚୁପ୍ ରହିଲେ ।

ତାପରେ ସେ ନିଜ ପ୍ରିୟ ଗଧଟି ପାଇଁ ଯଥା ବିଧି ଶୁଦ୍ଧକ୍ରିୟାର ଆୟୋଜନ କଲେ । ବିଧି ଅନୁଯାୟୀ ପଣ୍ଡିତଙ୍କୁ ଲଣ୍ଡା କରିବାକୁ ଯେଉଁ ଭଣ୍ଡାରିଟି ଯାଇଥିଲା, ତା' ନାଁ ଉଦ୍ଧବ । ଉଦ୍ଧବ ପଣ୍ଡିତଙ୍କୁ ଲଣ୍ଡା କରି ସାରି ପଚାରିଲା—ମହାପ୍ରଭୁ ! ଏମନ୍ତ କେମନ୍ତ ହେଲା ? ଆପଣେ କାହାଁକି ଲଣ୍ଡା ହେଲେ ?

ପଣ୍ଡିତେ ଦୁଃଖରେ କହିଲେ—କ'ଣ କରିବା, ଉଦ୍ଧବ, ଆମର ରାଜାର ପରା କୃଷ୍ଣପ୍ରାପ୍ତି ଘଟିଛି ।

ଉଦ୍ଧବ କହିଲା—ଆହା—ହା । କେଡ଼େ କଥାଟାଏ ହୋଇଗଲା, ଆଜ୍ଞା । ଠାକୁରେ ଶେଷରେ ଏଇୟା କଲେ ! ଆମେ କେହି ଜମା ଖବର ବି ପାଇଲୁ ନାହିଁ । ଯେତେ ହେଲେ ଆମର ରାଜା । ମୁଁ ବି ଆପଣଙ୍କ ସହିତ ଲଣ୍ଡା ହୋଇ ଶୁଦ୍ଧି ହେବ ।

ଉଦ୍ଧବ ବି ସାଙ୍ଗେ ସାଙ୍ଗେ ଲଣ୍ଡା ହୋଇ ଶୁଦ୍ଧ ସ୍ନାନ ନିମନ୍ତେ ପୋଖରୀକୁ ବାହାରି ପଡ଼ିଲା । ବାଟରେ ନଗରର ଶ୍ରେଷ୍ଠ ବଣିକ ମାଣିକଚାନ୍ଦଙ୍କ ସହିତ ଉଦ୍ଧବର ଭେଟ ହେଲା । ସେ ଉଦ୍ଧବ ଠାରୁ ରାଜାଙ୍କର କୃଷ୍ଣପ୍ରାପ୍ତି କଥା ଶୁଣି ଦୁଃଖ କଲେ । ସେ ବି ସାଙ୍ଗେ ସାଙ୍ଗେ ଲଣ୍ଡା ହୋଇ ଶୁଦ୍ଧସ୍ନାନ

ଆଦ ଯାଉଲେ । ଗୃହୁଁ ଗୃହୁଁ କଥାଟା ପବନ ବେଗରେ କାନକୁ କାନ ହୋଇ ନଗରସାରା ବ୍ୟାପିଗଲା । ଯେ ଶୁଣିଲା ସେ ସଙ୍ଗେ ସଙ୍ଗେ ପ୍ରିୟ ରାଜାଙ୍କ ପାଇଁ ଲଣ୍ଡା ହୋଇ ଶୁଦ୍ଧି ହେଲା । ସଞ୍ଜ ବେଳକୁ ଦେଖାଗଲା, ନଗରସାରା ଲୋକ ଲଣ୍ଡା ହୋଇ ଯାଉଲେଣି ।

ସେଦିନ ସଂଧ୍ୟାରେ ରାଜାଙ୍କର ଦୁଇଜଣ ସିପାହୀ ବଣିକ ମାଣିକଚନ୍ଦ୍ରଙ୍କ ଠାରୁ କର ଆଦାୟ କରିବା ନିମନ୍ତେ ନଗରରେ ପହଞ୍ଚିଲେ । ସେମାନେ ନଗର ବାସୀଙ୍କୁ ଦେଖି କୌତୁହଳରେ ବଣିକଙ୍କୁ ଲଣ୍ଡା ହେବାର କାରଣ ପଚାରିଲେ ।

ବଣିକ ମାଣିକଚନ୍ଦ୍ର କହିଲେ—ଆମର ପ୍ରିୟ ରାଜାଙ୍କର ପରା କୃଷ୍ଣପ୍ରାପ୍ତି ଘଟିଛି ।

ସିପାହୀ ଦୁଇଜଣ ଆଶ୍ଚର୍ଯ୍ୟ ହୋଇ କହିଲେ—କେଉଁ ରାଜାଙ୍କର କଥା ତମେ କହୁଛ ? ଆମେ ତ କିଛି ସମୟ ପୂର୍ବରୁ ଖୋଦ ରାଜାଙ୍କର ଆଦେଶ ନେଇ ଏଠାକୁ ଆସିଛୁ । ଆମେ ଦେଖି ଆସିଛୁ, ରାଜା ବେଶ୍ ସୁସ୍ଥ ସବଳ ଅଛନ୍ତି ।

ବଣିକ ମାଣିକଚନ୍ଦ୍ର ବଡ଼ ଅଡୁଆରେ ପଡ଼ିଗଲେ । ତେବେ କଥାଟା କ'ଣ ମିଛ ? ଯାଙ୍ଗେ ଯାଙ୍ଗେ ଉଦ୍ଧବକୁ ଡ଼କରା ହେଲା । ଦେଖୁଁ ଦେଖୁଁ ନଗରସାରା ଲୋକ ଆସି ସେଠାରେ ରୁଣ୍ଡ ହୋଇଗଲେ । ଉଦ୍ଧବ ରାଜଗୁରୁ ପଣ୍ଡିତଙ୍କଠାରୁ ଯାହା ସବୁ ଶୁଣିଥିଲା, ସେଇୟା କହିଲା । ତାପରେ ସମସ୍ତେ କଥାଟାର ସତ୍ୟତା ବୁଝିବା ନିମନ୍ତେ ରାଜଗୁରୁଙ୍କ ପାଖକୁ ଦୌଡ଼ିଲେ ।

ରାଜଗୁରୁ ଆପଣେ ଦୂରରୁ ଲୋକଙ୍କ ପଟୁଆର ଦେଖି ପ୍ରଥମେ ଛାନିଆ ହୋଇଗଲେ । କିନ୍ତୁ ପରେ ଭାବିଲେ— ବୋଧହୁଏ ନଗରବାସୀ ତାଙ୍କ ପ୍ରତି ସମବେଦନା ଜଣାଇବା ପାଇଁ ଆସୁଛନ୍ତି ।

ନଗରବାସୀ ପଣ୍ଡିତଙ୍କ ନିକଟରେ ପହଞ୍ଚିଲେ । ସବା ଆଗରେ ଥାଏ ଉଦ୍ଧବ । ସେ ପ୍ରଥମେ ପଣ୍ଡିତଙ୍କ ଆଡ଼କୁ ମାଡ଼ିଯାଇ ଚଡ଼ା ଗଳାରେ କହିଲା—ମହାପ୍ରଭୁ ! ଆପଣେ କାହିଁକି ଡ଼ାହା ମିଛ କଥାଟାଏ କହିଲେ ? ସିପାହୀ ବାବୁମାନେ କହୁଛନ୍ତି ଆମ ରାଜାତ ବେଶ୍ ସୁସ୍ଥ ସବଳ ଅଛନ୍ତି । ତେବେ ତାଙ୍କର କୃଷ୍ଣପ୍ରାପ୍ତି ଘଟିଲା କେତେବେଳେ ?



ପଣ୍ଡିତେ ଉଦ୍ଧବ ଉପରେ ଭୀଷଣ କ୍ରୋଧରେ ଚଢ଼ିଯାଇ କହିଲେ—

ଉଦ୍ଧବ, କେତେ ତୁ ପଚାରୁ
ଯାହା ବୁଝିଲୁ ଖୁମ୍ବ ଆଳୁ ।

ତୁ ତ ନିହାତି ମୂର୍ଖଟାଏ । ଆଉ ତୁ ବୁଝିବୁ କ'ଣ, ଖୁମ୍ବ ଆଳୁ ? ଆରେ ବୋକା, ମୁଁ ମୋ ଘରେ ଗୋଟିଏ ଗଧ ପୋଷିଥିଲି । ତା' ନାଁ ଥିଲା, ଶଙ୍ଖରାଜା । ସ୍ନେହରେ ମୁଁ ତାକୁ ରାଜା ବୋଲି ଡ଼ାକୁଥିଲି । ହଠାତ୍ କ'ଣ ଗୋଟାଏ ଅଚିହ୍ନା ବ୍ୟାଧିରେ

ପଡ଼ି ତାର କୃଷ୍ଣପ୍ରାପ୍ତି ଘଟିଲା । ସେଇ କଥା ମୁଁ ତତେ କହିଲି ।

ଏହାଶୁଣି ନଗରବାସୀଙ୍କ ପାଟିରୁ ଜମା କଥା ବାହାରିଲା ନାହିଁ । ସଭିଏଁ ବୋକା ବନିଯାଇଥିଲେ । ପରସ୍ପର ମୁହଁକୁ ଖାଲି ଚାହିଁ ଚାହିଁ ହୋଇ ମନେ ମନେ ଅନୁତାପ କରୁଥା'ନ୍ତି । କଥାଟାକୁ ଭଲଭାବେ ନବୁଝି ନସୁଝି ହୁଦୁପ୍ତେ କାମଟାଏ କରିପକାଇଛନ୍ତି ଯେତେବେଳେ, ଆଉ ଦୋଷ ଦେବେ କାହାକୁ ? ଶେଷରେ ଚୋର ମୁହଁରେ ଲୁଣ ଦେଲାଭଳି ମୁହଁକୁ ଯାକି ଯେ'ଯା' ଘରକୁ ଫେରିଲେ । ଏଣେ ସିପାହୀ ଦୁଇଜଣ ଅସଲ ଘଟଣାଟି ବୁଝିପାରି ହସି ହସି ବେଦମ୍ ହୋଇ ପଡ଼ିଲେ ।

ଏଣୁ କୁହାଯାଇଛି—ବୁଝି ବିଚାରି କାମ କଲେ, ପ୍ରମାଦ ନ ପଡ଼ଇ ଭଲେ ।



# ମିଛି ମିଛିକା କଥା



ଗାଁ ମାମଲତକାର ବାଙ୍କ ବାବୁଙ୍କ ପୁଅ ଟଙ୍କଧରର ବୟସ କୋଡ଼ିଏ ଟପିଲାଣି । ଦେଖିବାକୁ ସଲଖ ସୁନ୍ଦର ଭେଣ୍ଡିଆଟିଏ କିନ୍ତୁ କାମଧନ୍ଦାରେ ଠିକ୍ ଘୋରଣାର ଛଲପଟ ପରି । ଯାହାକୁ କହନ୍ତି ନପଟ ଅଳସୁଆ, ଆଉ ନିକମା । ରାମାୟଣର କୁମ୍ଭକର୍ଣ୍ଣ ପରି ଖାଲି ଖାଇବା, ଶୋଇବା ଛଡ଼ା ତାର ଅନ୍ୟ କୌଣସି ଚିନ୍ତା ନଥାଏ । ଏଇଥିପାଇଁ ବାଙ୍କ ବାବୁଙ୍କ ମନ ବାଇଡଙ୍କ ବିଛୁଆତି ଲାଗିଲା ଭଳି ବାଡ଼େଇପିଟି ହେଉଥାଏ । କିନ୍ତୁ କ'ଣ କରିବେ ? ଭାଗ୍ୟ ମନ୍ଦକୁ ଘୋଡ଼ାମୁହାଁ ପୁଅର ଜନ୍ମ । ଗୋଟିଏ ଦୋଲତ ପୁଅ, ଅନ୍ଧର ଲହୁଡ଼ୀ ।

ଟଙ୍କଧର ନି'ତ ମନେ ମନେ ଆକାଶ କୁସୁମ ତୋଳେ । ସେ ଭାବୁଥାଏ, ଦିନେ ନା ଦିନେ ନିଶ୍ଚୟ ତା' ମୁଣ୍ଡ ଉପରେ ହାତୀ ସୁନା କଳଶ ଢାଳିବ । ସେ ରାତା ରାତି ରାଜା କିମ୍ବା ମନ୍ତ୍ରୀ ଏମିତି କିଛି ଗୋଟାଏ ବଡ଼ ଲୋକ ହୋଇଯିବ । ଦିନେ ସେ ସ୍ୱପ୍ନ ଦେଖିଲା, ସତକୁ ସତ ରାଜାଙ୍କର ପାଟ ହାତୀ ତା' ମୁଣ୍ଡ ଉପରେ ସୁନା କଳଶ ଢାଳି ଦେଇଛି । ସେ କୌଣସି

ଏକ ରାଜ୍ୟର ରାଜା ହୋଇଯାଇଛୁ । ରାଜା ହେବାପରେ ମନ୍ତ୍ରୀ ଠାରୁ ଆରମ୍ଭ କରି ଦାସୀ ପୋଇଲାଯାଏଁ ସଭିଏଁ ତାର ସେବାରେ ଖଟୁଛନ୍ତି । ଖାଇବା ପିଇବା କଥା ଆଉ କ'ଣ କହିବା ? ରଜାଘର କେଉଁ କଥା ଅବା ଅପୂରୁବ । ଖାଲି ଖାଅ, ପିଅ, ମଉଜ ମଜଲିସ କର । ଏମିତି ଟଙ୍କଧର ରଙ୍ଗୀନ ସ୍ୱପ୍ନ ଦେଖାରେ ମସଗୁଲ ଥିଲା । ହଠାତ ତା' ସାନ ଭଉଣୀର ଡାକରେ ନିଦଟା ଛୃଉକିନା ଭାଙ୍ଗିଗଲା । ସେ ପାଟିକରି ଉଠିଲା—କିଏରେ ତୁ ମୂର୍ଖ ?

ଉଷା କହିଲା—ମୂର୍ଖ ନୁହେଁ, ଭାଇ । ମୁଁ ତମ ସାନ ଭଉଣୀ ଉଷା । ଖାଇବ ପରି ଆସ । ଭାତ ବଢ଼ା ହେଲାଣି । ଟଙ୍କଧର କହିଲା—ଆଚ୍ଛା କ'ଣ ସବୁ ବାଢ଼ିଛୁ କହିଲୁ । ଉଷା କହିଲା, ଭାତ, ଡ଼ାଲି ଆଉ ବଡ଼ି, କଖାରୁ, ତେନ୍ତୁଳି ଖଟା । ଖଟା କଥା ଶୁଣି ଟଙ୍କଧର ମୁହଁକୁ ଖଟା ଖାଇଲା ପରି କରି କହିଲା—କ'ଣ କହିଲୁ, ମୁଁ ପୁଣି ଏଗୁଡ଼ାକ ଖାଇବି ? ଜାଣିଛୁ ମୁଁ ବର୍ତ୍ତମାନ ଗୋଟିଏ ରାଜ୍ୟର ରାଜା । ରାଜା ମହାରାଜାମାନେ କ'ଣ ଏମିତିକା ବାଜେ ଖାଦ୍ୟ ଖାଆନ୍ତି ?

ଉଷା କହିଲା—ସତେ ନା କ'ଣ ? ତମେ ତା' ହେଲେ ଘୁମ୍' ଭିତରେ ରାଜା ପାଲଟି ଗଲଣି ? ତେବେ ମୁଁ ଯାଉଛି, ଏ ଶୁଭ ଖବରଟା ମା'ଙ୍କୁ ଜଣାଇଦେବି ।

ଟଙ୍କଧରର ମା' ଆସିଲେ । ସେ ଟଙ୍କଧରକୁ ଖାଇବା ପାଇଁ ଡାକିଲେ । କିନ୍ତୁ ଟଙ୍କଧରତ ସପନ ରାଜ୍ୟରେ ଭାସୁଥିଲା । ନିଜକୁ ନିଜେ ସତରେ ଜଣେ ରାଜା ବୋଲି ଭାବୁଥାଏ । ମା' ଯେତେ ବୁଝାଇଲେ ସେ ବୁଝିବ କୁଆଡ଼ୁ ? ତାର ଏକା ଜିଦ୍ ସେମିତି ରାଜକୀୟ ଖାନା ନ ହେଲେ ସେ ଜମା ଖାଇବ ନାହିଁ । ଟଙ୍କଧରର ମା' ହତାଶ ହୋଇ ଫେରିଗଲେ । ସେ ଯାଇ ବାଙ୍କ ବାବୁଙ୍କୁ ପୁଅର ପାଗଳାମି ବର୍ଣ୍ଣନା କଲେ । ଶେଷରେ ବାଙ୍କବାବୁ ନିଜେ ଆସିଲେ । ସେ ଟଙ୍କଧରକୁ ଚେଡ଼ୁକ ଦେଖାଇ

କହିଲେ—ମଣିମା, ଆମର ଭୁଲ ହୋଇଗଲା । ଏଇଥର ମଣୋହିକୁ ବିଜେ କରନ୍ତୁ । ଆପଣଙ୍କ ମନଲାଖି ନାନା କିସମର ରାଜକୀୟ ଖାନା ପ୍ରସ୍ତୁତ ହୋଇ ସାରିଛି ।



ଝଙ୍କଧର ରାଜା ଠାଣିରେ ଯାଇ ବିଛାଇ ହୋଇଥିବା ଆସନରେ ବସିପଡ଼ିଲା । ବାଙ୍କବାବୁ ପାଟିକରି ଉଠିଲେ—ଆରେ ମା' ଉଷା, ମଣିମାଙ୍କ ପାଇଁ ସବୁ ବାଢ଼ିଦେ । ଉଷା ଆସିଲା, ବାଙ୍କବାବୁ କହିଲେ ଦେ' ମା' ଦେ' । ଖେଚୁଡ଼ି ଦେ', ଖିରି ଦେ', ଶାକରି ଦେ', ମାଛ ମହୁର ଦେ' । ଏମିତି ଗୋଟିକ ପରେ ଗୋଟିଏ ସେ କେତେ ନାଁ କହିଲେ । ତାପରେ ପଚାରିଲେ—ସବୁ ଦେଲୁ ମା' ? ଉଷା କହିଲା—ହଁ ବାପା ସବୁ ଦେଲି ।

ବାଙ୍କ ବାବୁ କହିଲେ—ଏଇଥର ମଣୋହି ଆରମ୍ଭ କରନ୍ତୁ ମଣିମା । ମାଛ ମହୁରଟା ବଢ଼ିଆ ହୋଇଛି, ମଣିମା । ମା' ଉଷା, ମଣିମାଙ୍କ ପାଇଁ ଆଉ ମାଛ ମହୁରୁ ଆଣିଦେ' । ମାଂସ ତରକାରୀ କେମିତି ଲାଗୁଛି, ହଜୁର ? ମୁଁ ଜାଣେପରା ,

ନିଶ୍ଚୟ ଭଲ ହୋଇଥିବ । ଆମ ଉଷା ପରା ନିଜେ ସବୁ ରାନ୍ଧିଛି । ଆଉ ଟିକିଏ ଖିରି ଖାଆନ୍ତୁ ନା । ମା' ଉଷା ମଣିମାଙ୍କ ପାଇଁ ପାଣି ଆଣିଦେ' । ସେ ହାତ ଧୋଇବେ । ଦେ' ମା', ହାତକୁ ପାଣି ବଢ଼େଇ ଦେ ।

ଏ ଯାଏଁ ଟଙ୍କଧର ବୋକାଙ୍କ ପରି ମିଟିମିଟି ଆଖି କରି ଚାହିଁ ରହିଥିଲା । ଆଉ କି ସମ୍ଭାଳି ଯାଅନ୍ତା ? ରାଗରେ ଉଠି ପଡ଼ି କହିଲା—କ'ଣ ଏ ସବୁ ପ୍ରହସନ ଚାଲିଛି ? ମୋ ପେଟ ଏଣେ ଭୋକରେ ରାମ ରାମ ଡ଼ାକିଲାଣି, ଅଥଚ ତମର ଅଳା ପରିହାସ ଚାଲିଛି ?

ବାଙ୍କବାବୁ କହିଲେ—ରାଗିଲେ କି ମଣିମା ? ହେଲେ ଆମର ଭୁଲ କ'ଣ ?

ଟଙ୍କଧର କହିଲା—କ'ଣ ମୋତେ ବୋକା ବୋଲି ଭାବିଛ ? ଖିରି, ଖେଚୁଡ଼ି, ମହୁରର ନାଁ ଗନ୍ଧ ନାହିଁ, ତୁଚ୍ଛାକୁ ଖାଲି ଏଇଟା ଖାଅ, ସେଇଟା ଖାଅ, ଏଇଟା ଦେ, ସେଇଟା ଦେ । ସତରେ ସବୁ ଦେଲ ଭଳି ମିଛମିଛିକା ଅଭିନୟ ଚାଲିଛି ।

ବାଙ୍କବାବୁ କହିଲେ—କିନ୍ତୁ ମଣିମା, ଆପଣ ତୁଚ୍ଛାକୁ ସିନା ରାଗ ପଡ଼ୁଛନ୍ତି, ହେଲେ, ଆପଣ କ'ଣ ଜାଣନ୍ତି ନାହିଁ । ଯେମିତ ଦିଅଁଙ୍କୁ ସେମିତ ପୂଜା । ମିଛି ମିଛିକା ରାଜାଙ୍କୁ ମିଛ ମିଛିକା ଭୋଜନ ।

ଟଙ୍କଧର ରାଗରେ ଧୁମ୍ ଧୁମ୍ ହୋଇ ତା' ଶୋଇବା ଘରକୁ ଚାଲିଗଲା । କିନ୍ତୁ ଏହାପରେ ଆଉ କେହି ତାକୁ ଖାଇବା କଥା ପଚାରିଲେ ନାହିଁ । ଏଣେ ସେ ଭୋକରେ ଛଟପଟ

ହେଉଥାଏ । ଶେଷରେ ସେ ଭୋକ ସମ୍ଭାଳି ନ ପାରି ପାଟିକରି ଉଠିଲି—ମୋତେ ଆଜି ଖାଇବାକୁ ଦେବ କି ନାହିଁ ?

ପାଟି ଶୁଣି ଉଷା ଦୌଡ଼ି ଆସି କହିଲି—ମଣିମା, ବାପା କହିଛନ୍ତି—ଆମେ ଗରୀବ । ତୁମ ପରି ରାଜା ମହାରାଜାଙ୍କୁ ଖାଇବାକୁ ଦେଲାଭଳି ସମ୍ବଳ ଆମର ନାହିଁ । ଯାହା ଘରେ ଅଛି ଖାଇଲ ତ ଖାଅ ।

ଟଙ୍କଧରର ସେତେବେଳେ ନାହିଁ ନ ଥିବା ଭୋକ । ରାଜା ହେବା ନିଶା ତାର ପୂରା ପୂରି ଛାଡ଼ି ଯାଇଥିଲା । ସେ ବିକଳ ସ୍ୱରରେ କହିଲା—ଏ ଉଷା, ତୋର ଭାରି ଧରମ ହେବ । ଯାହା ଅଛି ଯଲ୍‌ଦି କ'ଣ ଗଣ୍ଡେ ଖାଇବାକୁ ଦେଲୁ ।



ଉଷା କହିଲି—କିନ୍ତୁ ମଣିମା, ଶୁଣିବା ହୁଅନ୍ତୁ । ପିତାଙ୍କ ଆଦେଶ । ଯଦି ଆସନ୍ତା କାଲିଠାରୁ ତମେ ଯାଇ

ଜମିରେ କାମ କରିବ, ତେବେ ଖାଇବାକୁ ଦିଆଯିବ । ନଚେତ ଏ ଘରେ ତମ ପାଇଁ ଖାଇବା, ପିଇବା ସବୁ ବନ୍ଦ ।

ଝଙ୍କଧର କହିଲା—ଓହୋ, ହେଲା ବାବା ହେଲା । ମୁଁ ମୁଁ ଏଣିକି କାମ କରିବି । ଜମା ଅଳସୁଆ ହେବି ନାହିଁ । ହେଲେ ମୋତେ ଶୀଘ୍ର କ'ଣ ଗଣ୍ଡେ ଖାଇବାକୁ ଦେଲୁ ।

ଉଷା ହସି ହସି କହିଲା—ଏଇଥର ଠିକ୍ ବାଟକୁ ଆସିଲ । କଥାରେ ଅଛି—ଯେମିତି ଦିଅଁକୁ, ସେମିତି ପୂଜା !!

